ଭୁଟାନ ଦେଶର ଲୋକକଥା
ଦିନନାଥ ପାଠୀ

ପ୍ରକାଶକ : ଆମ ଓଡ଼ିଶା,
୪ ଆର୍ ୧/୨, ଇଉନିଟ୍-୩,
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ : ଶ୍ରୀରାମ ସ୍କ୍ରିନ୍ ପ୍ରିଣ୍ଟିଂ
ଭୁବନେଶ୍ୱର-୭୫୧୦୦୭

ପ୍ରଥମ ସଂସ୍କରଣ : ଡିସେମ୍ବର, ୨୦୧୪

ପ୍ରଚ୍ଛଦ: ଜ୍ୟୋତିରଂଜନ ସ୍ୱାଇଁ
ଭିତର ଚିତ୍ର: ମହେଶ୍ୱର ମହାରଣା

ମୂଲ୍ୟ : ଟ.୩୫/-

**Bhutan Deshara Lokakatha**
Dinanath Pathy

Publisher : Aama Odisha,
4R 1/2, Unit-3, Bhubaneswar-751001
e-mail : aamaodisha@gmail.com

Printed at : Sriram Screen Printing
Bhubaneswar- 751007

First edition : December, 2014

Cover : Jyotiranjan Swain
Illustration : Maheswara Maharana

Price : ₹. 35/-

ISBN : 978-81-89436-91-9

# ଗପଗୁଡ଼ିକର ଆଦିକଥା

ଭୁଟାନ ଦେଶରେ ପହଞ୍ଚିବାପାଇଁ ଆମେ ଇନ୍ଦିରା ଗାନ୍ଧୀ ଅନ୍ତର୍ଜାତୀୟ ବିମାନ ବନ୍ଦରରୁ ଡ୍ରୁକ୍ ବିମାନରେ ଚଢ଼ିଲୁ । ମୋ ସାଙ୍ଗରେ ଆଉ ଦୁଇ ଚାରି ଜଣ ଭାରତୀୟ ବନ୍ଧୁ ଥିଲେ । ଭୁଟାନର ରାଜା ଜିଗ୍‌ମେ ଖେସାର ନାମଗେ୍ୟଲ୍ ଓ୍ୱାଙ୍ଗ୍‌ଚୁକ୍ ଓ ରାଣୀ ଜେଟ୍‌ସୁନ୍ ପେମାଙ୍କ ବିବାହ ଉତ୍ସବରେ ଯୋଗଦେବା ପାଇଁ ଆମେ ଭୁଟାନ ଯାଉଥାଉ । ଉଦ୍ଦେଶ୍ୟ ଥାଏ ସୁଇସ୍ ବନ୍ଧୁ ଏବରହାର୍ଡ଼ ଫିସରଙ୍କ ସତୁରି ପୂର୍ତ୍ତି ପାଳିବା । ଥିମ୍ପୁ ବିମାନବନ୍ଦରରେ ପହଞ୍ଚିବା ପାଇଁ ଆମ ବିମାନ ବସ୍ତୁତଃ ହିମାଳୟର ବରଫାବୃତ ଗିରିଶୃଙ୍ଗ ଭିତର ଦେଇ ଯାଉଥିବା ବେଳେ ଗୋଟିଏ ଅଜଣା ବିସ୍ମୟ ଓ ଉଲ୍ଲାସରେ ମୁଁ କୁରୁଳି ଉଠିଲି । ମନେ ହେଉଥାଏ ଆମ ବିମାନଟି ପାହାଡ଼ ଦେହରେ ପିଟିହୋଇ ଚୂର୍‌ମାର୍ ହୋଇଯିବ । ହେଲେ ସେମିତି କିଛି ଅଘଟଣ ଘଟିଲାନି ।

ଭୁଟାନ ଦେଶର ମାଟିରେ ପାଦଦେଲା ପରେ ମନେହେଲା ଗୋଟିଏ ପାହାଡ଼ ପର୍ବତ ଘେରା ସୁନ୍ଦର ଦେଶରେ ପହଞ୍ଚିଯାଇଛି । ପାହାଡ଼ରୁ ଛୋଟ ବଡ଼ ଝରଣା ଓ ଜଳପ୍ରପାତ ଝରିପଡୁଛି । ପାହାଡ଼ ମୁଣ୍ଡରେ ଥିବା ବୁଦ୍ଧ ମନ୍ଦିର, ମଠ ଓ ପୋତାଲାମାନଙ୍କର ସ୍ୱର୍ଣ୍ଣାଭ ଚୂଡ଼ା ଶୀତସକାଳର ଖରାରେ ଝଲସି ଉଠୁଛି ଏବଂ ଶୁଭ୍ର ଓ ହଳଦୀ ରଙ୍ଗର ପତାକାମାନ ଫରଫର ହୋଇ ଉଡୁଛି । ପରିଚ୍ଛନ୍ନ ନୀଳ ଆକାଶ ଓ ନିର୍ମଳ ପରିବେଶ । ଥିମ୍ପୁ ବିମାନ ବନ୍ଦରରୁ ସହରକୁ ଗଲାବେଳେ ଆଖିରେ ପଡ଼ିଲା ରାସ୍ତା କଡ଼େ କଡ଼େ ଧାଡ଼ିବାନ୍ଧି ଠିଆହୋଇଥିବା ଭୁଟାନବାସୀଙ୍କ ରଙ୍ଗବେରଙ୍ଗ ପୋଷାକର ମନଲୋଭାଣିଆ ରୂପ । ସେମାନଙ୍କ ହାତରେ ଥିଲା ଫଳ ଓ ଫୁଲର ଚିତ୍ର ବିଚିତ୍ର ଟାଙ୍ଗୁଡ଼ି । ପାହାଡ଼ ମୁଣ୍ଡ ଉପରେ ଥିବା ଗାଁଗୁଡ଼ିକରୁ ଲୋକମାନଙ୍କର ଧାଡ଼ି ମୂଳ ରାସ୍ତା ଆଡ଼କୁ ଲମ୍ବିଛି । ଅଦ୍ଭୁତ ଏ ଦୃଶ୍ୟ ! ଆମ ଟାକ୍‌ସିର ଡ୍ରାଇଭର ଆମକୁ ଜଣେଇ ଦେଲେ ଯେ ନବବିବାହିତ ରାଜା ତାଙ୍କ ରାଣୀଙ୍କୁ

ନେଇ ସେହି ରାସ୍ତାରେ ଚାଲିଚାଲି ନଅରକୁ ଯିବେ । ପନ୍ଦର କିଲୋମିଟର ଲମ୍ବା ରାସ୍ତା । ରାଜା ରାଣୀ କ'ଣ ଏତେ ବାଟ ପାଦରେ ଚାଲିଚାଲି ଯିବେ ? ଡ୍ରାଇଭର ଆମର ସନ୍ଦେହ ଦୂର କରି କହିଲେ, "ସେ ପ୍ରତ୍ୟେକ ଭୁଟାନବାସୀଙ୍କ ସହ କରମର୍ଦ୍ଦନ କରିବେ, ଆଶୀର୍ବାଦ ମାଗିବେ ।" ଏଭଳି ଏକ ରାଜକୀୟ ଅଥଚ ଲୋକାଭିମୁଖୀ ପରମ୍ପରାରେ ଆମେ ଅଭିଭୂତ ହୋଇଗଲୁ । ରାଜଧାନୀରେ ପହଞ୍ଚି ନିଷ୍ପତ୍ତି କଲୁ, ଆମେ ବି ଲୋକଙ୍କ ସାଙ୍ଗରେ ଧାଡ଼ିରେ ଠିଆ ହୋଇ ରାଜାରାଣୀଙ୍କୁ ଦେଖିବୁ ଓ ହାତ ମିଳେଇବୁ । ଅଭୁଲା ସେ ଅନୁଭବ ।

ଭୁଟାନରେ ସପ୍ତାହକର ରହଣି ଭିତରେ କେତେ ମଠ, ମନ୍ଦିର, ନଅର, ସାହି ବୁଲା ହେଲା । ସ୍ଥାପତ୍ୟର ସ୍ୱତନ୍ତ୍ର ଶୈଳୀ, କାନ୍ଥଚିତ୍ରଗୁଡ଼ିକର ଉଜ୍ଜ୍ୱଳ ବର୍ଣ୍ଣବିନ୍ୟାସ ଓ ଚିତ୍ରିତ କାଠ ଖୋଦେଇର ମନଲୋଭା କାରିଗରିରେ ଆମେ ପ୍ରଲୁବ୍ଧ ହୋଇଗଲୁ ।

ଭୁଟାନ ଦେଶର ପର୍ଯ୍ୟଟନୀୟ ବ୍ୟବସ୍ଥା ଭିତରେ ଡ୍ରାଇଭର ହିଁ ଗାଇଡ୍‌ର ଦାୟିତ୍ୱ ତୁଲାଇଲା । ଭୁଟାନରେ ଭାରତୀୟମାନେ ସ୍ୱଚ୍ଛନ୍ଦରେ ବୁଲାବୁଲି କରିବାର ସୁବିଧା ଅଛି । ଆମର ବନ୍ଧୁଦେଶ ଭୁଟାନ । ଆମ ଗାଇଡ୍ କାନ୍ଥ ଚିତ୍ରରେ ଅଙ୍କାଯାଇଥିବା ବହୁ ଲୋକକଥା ସଂପର୍କରେ ମୋତେ ଧାରଣା ଦେଲେ । ଭୁଟାନର ଚିତ୍ରକର, କବି ଓ ଲେଖକମାନଙ୍କ ସହିତ ବିଭିନ୍ନ ଉତ୍ସବ ମଉଚ୍ଛବରେ ଭେଟ ହେଲା । ମୁଁ ଭୁଟାନ ଦେଶର ଚାଲିଚଳଣି, ଖାଦ୍ୟପେୟ, ରୀତିନୀତି ସଂପର୍କରେ ଜାଣିବାପାଇଁ କୌତୂହଳୀ ହୋଇ ଭୁଟାନିଜ୍ ବନ୍ଧୁମାନଙ୍କୁ ପଚରାଉଚୁରା କଲି । ସେମାନଙ୍କ ମୁହଁରୁ ଶୁଣିଥିବା କଥାଗୁଡ଼ିକୁ ଗପ ଆକାରରେ ସଜେଇ ଦେଇଛି । 'ପୌରୁଷ'ର ସଂପାଦକ ବନ୍ଧୁ ଅସିତ ମହାନ୍ତି ଏହି ଗପଗୁଡ଼ିକୁ ପତ୍ରିକାରେ ସ୍ଥାନିତ କରି ମୋତେ ଜଣେ ଶିଶୁ ସାହିତ୍ୟିକ ଭାବରେ ଚିହ୍ନଟ କରିଦେଇଛନ୍ତି । ଏହି ପ୍ରକାଶିତ ଗପଗୁଡ଼ିକ ବହି ଆକାରରେ ପ୍ରକାଶ ପାଉଥିବା ଅବସରରେ 'ଆମ ଓଡ଼ିଶା'ର ଅଧ୍ୟକ୍ଷ ସୌମ୍ୟରଂଜନ ପଟ୍ଟନାୟକ ତଥା ଅନ୍ୟାନ୍ୟ ସହଯୋଗୀ ବନ୍ଧୁମାନଙ୍କ ନିକଟରେ ଏବଂ ଗପଗୁଡ଼ିକର ଚିତ୍ରକର ଏବଂ ପ୍ରଚ୍ଛଦଶିଳ୍ପୀଙ୍କ ପାଖରେ ମୁଁ କୃତଜ୍ଞ ।

**ଦିନନାଥ ପାଠୀ**

# ସୂଚିପତ୍ର



# ହୁପୁପକ୍ଷୀ

ଭୁଟାନରେ ଶୀତ ଦିନ । ପତ୍ରଝଡ଼ା ଦେଇ ଗଛଗୁଡ଼ିକ ଠୁଙ୍କା ଦିଶିଲେଣି । କୋହଲା ପବନ ଦେହ ଥରେଇ ଦେଉଛି । ବଣର ପଶୁପକ୍ଷୀମାନେ ନିଜ ନିଜ ବସାଘର ମରାମତି କରିବାରେ ଲାଗିପଡ଼ିଲେ । ଗୋଟିଏ ହୁପୁପକ୍ଷୀ ଯୋଡ଼ି ମଧ୍ୟ ଘର ତିଆରି କାମରେ ମନ ଦେଲେ । ହୁପୁପକ୍ଷୀ ଦୁହେଁ ଖୁବ୍ ସୁନ୍ଦର । ଗୋଲାପି ରଙ୍ଗର ଦେହ, କଳାଧଳା ଚିତ୍ର ହୋଇଥିବା ଡେଣା, ମୁଣ୍ଡରେ ବିଞ୍ଚଣା ଭଳି ପୁଚ୍ଛ ଆଉ ଲମ୍ବା ଲାଞ୍ଜ । ସେ ଦିହେଁ ଶୀତରୁ ରକ୍ଷାପାଇବା ପାଇଁ ନିଜ ବସାଟିକୁ ମଜଭୁତ କରିବାରେ ଲାଗିଲେ । ଧାନ, ଗହମ, ମକା, ବାଜରା, ମୁଗ, ବୁଟ ଦାନା ଯାହା ପାଇଲେ ଥଣ୍ଟରେ ଗୋଟାଇ ଆଣି ବସାଘର ଭିତରେ ସାଇତି ରଖିଲେ । ଶୀତ

ବେଶି ହେମାଳ ହେଲେ ଆଉ ଘରୁ ଗୋଡ଼କାଢ଼ି ବାହାରକୁ ଯାଇହେବନି । ସେମାନେ ଏହା ଭଲ ଭାବରେ ବୁଝିପାରିଥିଲେ ।

ଅଣ୍ଡିରା ହୁପୁପକ୍ଷୀ ବାହାରକୁ ଉଡ଼ିଉଡ଼ି ଯାଇ ଖାଦ୍ୟଶସ୍ୟ ସଂଗ୍ରହ କରେ ଆଉ ମାଈ ପକ୍ଷୀଟି ବସା ଭିତରେ ସେ ସବୁକୁ ଯେଝା ଜାଗାରେ ସାଇତି ରଖେ ।

ଦିନକର ଘଟଣା । ଅଣ୍ଡିରା ହୁପୁପକ୍ଷୀ ଗୋଟିଏ ସୁନ୍ଦର ମଟର ମଞ୍ଜି ଆଣିଥିଲା । ମାଈ ହୁପୁପକ୍ଷୀ ତାକୁ ଘର ଭିତରେ ସଜାଇ ରଖୁ ରଖୁ ତାହା ଥଣ୍ଟରୁ ଗଳିପଡ଼ି ଗଛତଳ ପଥର ସନ୍ଧାରେ ପଶିଗଲା । ସେ ବହୁଚେଷ୍ଟା କରି ମଧ୍ୟ ତାକୁ ପଥର ସନ୍ଧାରୁ ବାହାର କରିପାରିଲାନି । ସନ୍ଧ୍ୟାବେଳକୁ ଅଣ୍ଡିରା ହୁପୁ ହାଲିଆ ହେଇ ଘରକୁ ଫେରିଲା । ବସା ଭିତରେ ଆଖି ବୁଲେଇ ଆଣି ଦେଖିଲା ମଟର ମଞ୍ଜିଟି ନାହିଁ । ସେ ମାଈ ପକ୍ଷୀକୁ ଦୋଷ ଦେଲା । ରାଗିକରି କହିଲା, 'ତୁ ଚୋରଣୀ, ତାକୁ ଖାଇ ଦେଇଛୁ' । ଅଣ୍ଡିରା ହୁପୁ ତ ଏକେ ହାଲିଆ ଥିଲା ଏଣୁ ତା' ମୁଣ୍ଡରେ ରାଗ ପଞ୍ଚମକୁ ଉଠିଗଲା । ସିଏ ତା' ଡେଣା ଝାଡ଼ି, ମେଲିଦେଇ ପୁରୁଷପଣିଆରେ ତା' ସ୍ତ୍ରୀକୁ ଗାଳିମନ୍ଦ କଲା । ସେତିକିରେ ତା' ମନ ନ ମାନିବାରୁ ମାଈ ହୁପୁକୁ ଘର ଭିତରେ ଗୋଡ଼ାଇ ଗୋଡ଼ାଇ ଖୁମ୍ପିବାରେ ଲାଗିଲା । ମାଈ ହୁପୁଟି ସ୍ୱାମୀର ମାଡ଼ ଗଞ୍ଜଣା ସହି ନପାରି ଚଟାଣ ଉପରେ ଆତକାତ ହେଇ ପଡ଼ିଗଲା ଓ ମରିଗଲା । ଏବେ ଅଣ୍ଡିରା ପକ୍ଷୀର ମୁଣ୍ଡରେ ଚେତା ପଶିଲା ।

ସେ ଏଭଳି ଅଘଟଣଟିଏ ଘଟିଯିବ ବୋଲି କଳ୍ପନା ସୁଦ୍ଧା କରିନଥିଲା । ତା' ସ୍ତ୍ରୀ ପାଖରେ ବସିରହି କେତେ ବାହୁନି ବାହୁନି କାନ୍ଦିଲା । ମଲାପକ୍ଷୀ କ'ଣ ଜୀବନ ପାଏ ! ସେ ଭାବିଲା ତା' ସ୍ତ୍ରୀକୁ ନେଇ ଗୋଟିଏ ନିରାପଦ ଓ ପରିଷ୍କାର ଜାଗାରେ ରଖିଦେଇ ଆସିବ । ସେ ତା' ସ୍ତ୍ରୀର ମଲାହେହଟିକୁ କାନ୍ଧରେ ପକାଇ ଉଡ଼ିବା ଆରମ୍ଭ କଲା । ବିଲ, ବଣ, ନଦୀ, ନାଳ ଡେଇଁ ବହୁ ଦୂରକୁ ଉଡ଼ିଯାଇ ଗୋଟିଏ ପାହାଡ଼ ଉପରେ ଥିବା ବଡ଼ଗଛ ଡାଳରେ



ବସିଲା । ଚାରିଆଡୁ ଆଖି ବୁଲାଇ ଆଣି ଭାବିଲା, ଏହାହିଁ ତା' ସ୍ତ୍ରୀ ପାଇଁ ଉପଯୁକ୍ତ ଜାଗା । ଠିକ୍ ଏମିତି ଭାବୁଥିବାବେଳେ ଦେଖିଲା ଶାଗୁଣାଟିଏ ଆକାଶରେ ଚକ୍କର କାଟୁଛି । ସିଏ ଗୀତ ଦି' ପଦ ଗାଇଲାଃ

'ପର୍ବତମାନେ ଦେବତାଙ୍କ ଘର
ସବୁ ଏଠି ନିର୍ମଳ, ପବିତ୍ର ।
ତଥାପି  ମନରେ ସନ୍ଦେହ ହୁଏ
ଶାଗୁଣା ଘୂରିବୁଲେ ଆକାଶ ଉପରେ ।
ଏଠି କିଆଁ ରଖିବି ମୋ ସ୍ତ୍ରୀକୁ
କେଉଁ ଆଶା କେଉଁ  ଭରସାରେ ।'

ପୁଣି ତା' ସ୍ତ୍ରୀକୁ କାନ୍ଧରେ ପକାଇ ହୁପୁ ଉଡ଼ିବା ଆରମ୍ଭ କଲା । ସହସ୍ର କୋଶ ଉଡ଼ିଲା । ତା'ର ଡେଣା ଅବଶ ହୋଇପଡ଼ିଲା । ସେ ଥକିଯାଇ ଗୋଟିଏ ମସ୍ତବଡ଼ ପଡ଼ିଆରେ ପଡ଼ିଥିବା ପଥରଖଣ୍ଡ ଉପରେ ବସି ପଡ଼ିଲା । ଭାବିଲା, ଏହା ହିଁ ତା' ସ୍ତ୍ରୀ ପାଇଁ ଉପଯୁକ୍ତ ଜାଗା । ସେ ଚାରିଆଡୁ ଆଖି

ବୁଲେଇ ଆଣିଲା, ଦେଖିଲା ପଲପଲ ମୂଷା ପଥର ତଳେ ଚେଁ ଚାଁ ହେଉଛନ୍ତି । ତା' ମନ ଫିକା ପଡ଼ିଗଲା । ସେ ଦୁଃଖରେ ଦି'ପଦ ଗୀତ ଗାଇବାକୁ ଲାଗିଲାଃ

'ପଡ଼ିଆଟି ଲମ୍ବା ସମତଳ ଭାରି
ପାଦଚଲା ରାସ୍ତା ଛନ୍ଦାଛନ୍ଦି
ଏଠି ଲୋକଙ୍କର ଗହଳଚହଳ
ଭୟ ମାଡ଼ିପଡ଼େ ମୋତେ
ମୂଷାମାନେ ଏଇ ମୁହୂର୍ତ୍ତରେ
ଖାଇଯିବେ ମୋ ସ୍ତ୍ରୀର ଶବ
ଏଠି କିଆଁ ତାକୁ ଛାଡ଼ିଯିବି
କେଉଁ ଆଶା କେଉଁ ଭରସାରେ ।'

ତୃତୀୟ ଥର ପାଇଁ ହୁପୁପକ୍ଷୀ ତା' ସ୍ତ୍ରୀର ମଲା ଦେହଟାକୁ ନେଇ ଉଡ଼ିବାକୁ ଆରମ୍ଭ କଲା । ଉଡ଼ି ଉଡ଼ି ଗୋଟିଏ ନଦୀକୂଳରେ ପହଞ୍ଚି ନଦୀରେ ଭାସୁଥିବା ଗୋଟିଏ କାଠଗଡ଼ ଉପରେ ବସିଲା । ସେ ଚାରିଆଡୁ ଆଖି ବୁଲେଇ ଆଣିଲା । ଦେଖିଲା ଦଳଦଳ ମାଛ ନଦୀ ପାଣିରେ ପହଁରୁଛନ୍ତି । ହତାଶରେ ଦୁଇପଦ ଗୀତ ଗାଇଲାଃ

'ନଦୀ ତ ବହୁଛି ବେଗେବେଗେ
ପାଣିରେ ଭଉଁରୀ ।
ଭସାଇ ନେଉଛି କାଠିକୁଟା
ଆଉ ଯେତେବେଳେ ଦରବ
ମୋ ସ୍ତ୍ରୀ ବି ଭାସିଯିବ ପାଣିର ସୁଅରେ ।
ପାଲଟିବ ମାଛଙ୍କ ଆହାର
ଏଠି କିଆଁ ତାକୁ ଛାଡ଼ିଯିବି
କେଉଁ ଆଶା କେଉଁ ଭରସାରେ ।'



ହୁପୁପକ୍ଷୀ ନିଜକୁ କହିଲା, 'ମୋ ସ୍ତ୍ରୀପାଇଁ କୌଣସିଟି ଜାଗା ଠିକ୍ ଲାଗୁନି ।' ଏତକ କହିସାରି ସେ ତା' ସ୍ତ୍ରୀର ମଲା ଦେହଟିକୁ ପିଠିରେ ପକାଇ ପୁଣିଥରେ ଉଡ଼ିବା ଆରମ୍ଭ କଲା । କେତେ ବିଲ, ବଣ, ନଦୀ, ସମୁଦ୍ର, ପାହାଡ଼, ଉପତ୍ୟକା ପାରି ହେଲା । କିନ୍ତୁ ଉପଯୁକ୍ତ ଜାଗାଟିଏ ପାଇଲାନି । ଶେଷରେ ଠିକ୍ କଲା ନିଜ ଘରକୁ ବାହୁଡ଼ିଯିବ । ସେ ଶୀତଦିନ ସାରା ତା' ସ୍ତ୍ରୀର ଶବକୁ କାନ୍ଧରେ ବୋହି ପାଗଳ ଭଳି ଘୂରି ବୁଲୁଛି । ନିଜ ବସାକୁ ଫେରିଆସିଲା ବେଳକୁ ବସନ୍ତ ଋତୁ ଆସିଗଲାଣି । ଚାରିଆଡ଼ ଗଛଲତାରେ ଫୁଲ ଭର୍ତ୍ତି । ସେ ଏତେ ହାଲିଆ ହୋଇପଡ଼ିଥିଲା ଯେ, ସ୍ତ୍ରୀର ଦେହଟିକୁ ଘର ଦୁଆର ଆଗରେ ପଥର ଚଟାଣରେ ଥୋଇ ଦେଇ ଘର ଭିତରକୁ ଦଣ୍ଡେ ଚାହିଁଲା । ଘର ଭିତରେ ସେ ଯାହା ଦେଖିବାକୁ ପାଇଲା ସେଥିରେ ସେ ପରତେ ଗଲାନି । ଏ ଭିତରେ ମଟର ମଞ୍ଜିଟି ଲତା ହୋଇ ମାଡ଼ିଯାଇଛି, ସେଥିରେ ଫୁଲ ଧରିଛି । ଏହି ମଟର ମଞ୍ଜିଟିପାଇଁ ଏତେ ସବୁ ଅଘଟଣ ଘଟିଗଲା ! ପଛକଥା ଭାବିଲା ବେଳକୁ ତା' ଛାତି ଦୁକ୍‌ଦୁକ୍ କଲା । ସେ ହତାଶରେ ଲମ୍ବା ନିଃଶ୍ୱାସଟିଏ ଛାଡ଼ିଲା ଆଉ ସ୍ତ୍ରୀର ଶବ ପାଖରେ ମରି ଟଳିପଡ଼ିଲା ।



# କୁକୁଡ଼ା ଓ ମାଙ୍କଡ଼

ଗୋଟିଏ ମାଈ କୁକୁଡ଼ା ଓ ଅଣ୍ଡିରା ମାଙ୍କଡ଼ ଏକାଠି ରହୁଥିଲେ । ମାଙ୍କଡ଼ କ୍ଷେତବାଡ଼ି କାମ କରୁଥିଲା ଆଉ କୁକୁଡ଼ା ଘର ଓଳେଇ ଝାଟେଇ ସଫା ରଖୁଥିଲା ଏବଂ ଖାଦ୍ୟ ରନ୍ଧାରନ୍ଧି କରୁଥିଲା । ମାଙ୍କଡ଼କୁ କ୍ଷେତରେ କଠିନ ପରିଶ୍ରମ କରିବାକୁ ପଡୁଥିଲା । ଏଣୁ ଘରକୁ ଫେରିଲାବେଳକୁ ସେ ବେଶି ହାଲିଆ ହେଇ ଯାଉଥିଲା । ଘରକୁ ଫେରି ମାଙ୍କଡ଼ ଦେଖୁଥିଲା ଘର ପରିଷ୍କାର ଅଛି, ରନ୍ଧାବଢ଼ା ସରିଯାଇଛି ଓ କୁକୁଡ଼ା ଘର କଣରେ ମହା ଆନନ୍ଦରେ ଘୁଙ୍ଗୁଡ଼ି ମାରୁଛି ।

ମାଙ୍କଡ଼ ଭାବିଲା ତାକୁ କ୍ଷେତରେ ଅସମ୍ଭବ ଖଟିବାକୁ ପଡୁଛି ଆଉ କୁକୁଡ଼ାର କାମଧନ୍ଦା କିଛି ନାହିଁ । ସେ ଆରାମରେ ଦିନଯାକ ଘରେ ଶୋଉଛି । ସେ ନିଜେ ନିଜେ ଠିକ୍ କଲା କାମର ଧାରା ବଦଳେଇ ଦେବ । ତା' ପରଦିନ

ମାଙ୍କଡ଼ କଥା ପ୍ରକାରେ କୁକୁଡ଼ା କାନ୍ଧରେ କୋଦାଳ ଧରି କ୍ଷେତକୁ ଚାଲିଲା । ମାଙ୍କଡ଼ ଘର ସଫା କରିବାପାଇଁ ବାହାରିଲା କିନ୍ତୁ ଘର କେମିତି ସଫା ହୁଏ ଜାଣି ନଥିଲା । ସେ ରାନ୍ଧିବା ପାଇଁ ଚାହିଁଲା କିନ୍ତୁ ଚୂଲିରେ କେମିତି ନିଆଁ ଧରେଇବ ଜାଣିପାରିଲାନି । ଦିନ ସରି ସନ୍ଧ୍ୟା ଆସିଲା । କୁକୁଡ଼ା ଘରକୁ ଫେରିଲାବେଳକୁ ନା ଘର ସଫା ହୋଇଛି, ନା ଖାଦ୍ୟ ରନ୍ଧା ହୋଇଛି । ମାଙ୍କଡ଼ ମନେ ମନେ ନିଜ ଉପରେ ଗରଗର ହେଉଥାଏ ।

ତା' ପରଦିନ ମାଙ୍କଡ଼ ପୁଣି କାମ ବଦଳେଇ ଦେବାପାଇଁ କୁକୁଡ଼ାକୁ କହି କ୍ଷେତକୁ ବାହାରିଲା । କିନ୍ତୁ କ୍ଷେତକୁ ନଯାଇ ଘରପାଖ ଗଛଡାଳେ ଲୁଚି ରହି କୁକୁଡ଼ା ଘର ଭିତରେ କ'ଣ ସବୁ କରୁଛି ନିଘା କଲା । କୁକୁଡ଼ା ସକାଳ ଓଳି ସାରା ଅଳିଆ ଗଦାକୁ ଗୋଡ଼ରେ ଆଡ଼େଇ ଆଡ଼େଇ ନିଜ ଖାଇବା ସଂଗ୍ରହ କଲା । ତା'ପରେ ସେ ଘରକୁ ଯାଇ ନିଜ ଡେଣା ଦୁଇଟି ମେଲି ଫଡ଼ଫଡ଼ କରିବାରୁ ଘରର ଅଳିଆ ସଫା ହେଇଗଲା । ସେ ଚୂଲିରୁ ପାଉଁଶ ବାହାର କରି ଦକଦକ ନିଆଁକୁ ତେଜିଦେଲା । ତା'ପରେ କଡ଼େଇଟିଏ ଚୂଲି ଉପରେ ବସେଇ ଦେଲା । ସେଥିରେ ଘିଅ ଚାମୁଚେ ଢାଳିଦେଲା । ଘିଅ ତରଳି ଆସିଲାବେଳକୁ ଘରର ଓରା ଉପରେ ଚଢ଼ି କଡ଼େଇକୁ ଲାଖ କରି ଅଣ୍ଡାଟିଏ ଖସେଇ ଦେଲା । ଅଣ୍ଡାଟି ଥପ୍‌କିନା ଠିକ୍ କଡ଼େଇ ମଝିରେ ତରଳ ଘିଅ ଉପରେ ପଡ଼ି ମନକୁ ମନ ଭାଜି ହେଇ ସୁନା ରଂଗର ପିଠାଟିଏ ଭଳି ଦେଖାଗଲା । ସେ ଅଣ୍ଡାର ଖୋଳପା ଯାକ ନିଜ ଥଣ୍ଟରେ ଉଠେଇ ନେଇ ଘର ବାହାରେ ଅଳିଆଗଦାରେ ଫିଙ୍ଗିଦେଲା । ଏବେ ଘର ସଫା ଓ ରନ୍ଧା ମଧ୍ୟ ଶେଷ । ସେ ଘର କଣରେ ଦଣ୍ଡେ ଶୋଇପଡ଼ି ବିଶ୍ରାମ ନେଲା । ମାଙ୍କଡ଼ କୁକୁଡ଼ାର କାରନାମା ଦେଖୁଥାଏ । ନିଜକୁ କହିହେଲା, ଘରକାମ ଯଦି ଏତେ ସହଜ ତା' ହେଲେ ମୁଁ ଘରେ ରହିବି, କୁକୁଡ଼ା ଯାଉ କ୍ଷେତରେ କାମ କରିବ ।

କୁକୁଡ଼ାର ପରବାୟ ନଥିଲା । ସିଏ ତା' ପରଦିନ କୋଦାଳ ଧରି କ୍ଷେତକୁ ପୁଣି ଚାଲିଲା । କୁକୁଡ଼ା ଘରୁ ବାହାରିଗଲା ପରେ ମାଙ୍କଡ଼ ପାଖ ଜଙ୍ଗଲକୁ ଯାଇ ଏଡାଳରୁ ସେ ଡାଳକୁ ଡେଇଁଲା । ଫଳ ଫୁଲ ଯାହା ପାଇଲା ଆନନ୍ଦରେ ଖାଇଲା । ତା' ପରେ ଫେରି ଘରକୁ ସଫା କରିବାରେ ଲାଗିପଡ଼ିଲା । ତାର ଦୁଇବାହାକୁ ପହଞ୍ଚାଇ ଚଟାଣ ସଫା କରିବାକୁ ଚେଷ୍ଟାକଲା । କିନ୍ତୁ କିଛି ଫଳ ହେଲା ନାହିଁ । ଧୂଳିସବୁ ଉପରକୁ ଉଠିଲା ଏବଂ ପୁଣି ଥରେ ତଳକୁ ଖସିଆସି ଚଟାଣରେ ଜମିଗଲା । ସେ ଘର ସଫା କାମ ସେତିକିରେ ବନ୍ଦ ରଖି ଚୁଲି ଜଳାଇବା ପାଇଁ ଚେଷ୍ଟାକଲା । ଯେତେଥର ଚୁଲି ମୁହଁରେ ଫୁଙ୍କିଲା, ସେତେଥର ପାଉଁଶ ଉଡ଼ିଆସି ତା' ମୁହଁରେ ଭରିଗଲା । ବହୁ କଷ୍ଟରେ ନିଆଁ ଧରିଲା । ସିଏ କଡ଼େଇ ଆଣି ଚୁଲି ଉପରେ ଥୋଇଲା । ସେଥିରେ ଘିଅ ଚାମଚେ ପକାଇଲା । କୁକୁଡ଼ା ଯେଭଳି ଓରା ଉପରେ ଚଢ଼ି ଅଣ୍ଡା ଦେଇଥିଲା, ମାଙ୍କଡ଼ ସେଭଳି କରିବାକୁ ଚେଷ୍ଟା କଲା । ମାଙ୍କଡ଼ର ଅଣ୍ଡା ଆସିବ କୁଆଡୁ । କଡ଼େଇରେ ଘିଅ ବେଶି ଗରମ ହେଲାରୁ ପୋଡ଼ିଯାଇ ଧୂଆଁ ଉପରକୁ ଉଠିଲା ଓ ମାଙ୍କଡ଼ର ଲାଞ୍ଜରେ ନିଆଁ ଲାଗିଗଲା । ସେ ଓରାରୁ ତଳକୁ ଡେଇଁପଡ଼ି ବିକଳରେ ରଡ଼ି ଛାଡ଼ିଲା ଓ ମନେମନେ କୁକୁଡ଼ା ଉପରେ ରାଗିଲା । ସିଏ ନିଶ୍ଚିତ ହେଲା ଯେ କୁକୁଡ଼ା ଜାଣିଶୁଣି ଏସବୁ ଭିଆଣ କରିଛି ।

ମାଙ୍କଡ଼ ରାଗରେ ଗରଗର ହେଇ କୁକୁଡ଼ା ଘରକୁ ଫେରିବା ଯାଏଁ ଧୈର୍ଯ୍ୟ ଧରି ଆଉ ରହିପାରିଲାନି । ଘରେ କ'ଣ ସବୁ ଘଟିଯାଇଛି କୁକୁଡ଼ା କେମିତି ବା ଜାଣନ୍ତା । ସେ ଘରେ ପଶୁ ପଶୁ ମାଙ୍କଡ଼ ତାକୁ ମାରପିଟ କରିବା ଆରମ୍ଭ କଲା । ମାଙ୍କଡ଼ର ରାଗ ଏମିତି ପଞ୍ଚମକୁ ଉଠିଥିଲା ଯେ ଝରକା ଦେଇ କୁକୁଡ଼ା ଯଦି ଘରୁ ବାହାରି ଯାଇ ନଥାନ୍ତା, ତା' ହେଲେ ସେ କୁକୁଡ଼ାକୁ ପ୍ରାଣରେ ମାରି ଦେଇଥାନ୍ତା ।

କୁକୁଡ଼ା ପ୍ରାଣ ବିକଳରେ ଧାଉଁ ଧାଉଁ ବାଟରେ ଛୁଞ୍ଚିକୁ ଭେଟିଲା । ଛୁଞ୍ଚି କୁକୁଡ଼ାକୁ ଧାଇଁବାର କାରଣ ପଚାରନ୍ତେ କୁକୁଡ଼ା ସବୁକଥା କହିଲା । ଛୁଞ୍ଚି



କୁକୁଡ଼ାର ଦୁଃଖ ବୁଝିପାରି ତାକୁ ଭରସା ଦେଇ କହିଲା, 'ଦୁଇକୁ ଏକ ସରିନୁହଁ । ଚାଲ ମୁଁ ତମ ସାଙ୍ଗରେ ଆସିବି । ବାଟରେ ଆସୁଆସୁ ଲୁଣ ଚେଲାଟିଏ କୁ ଭେଟିଲେ । ଲୁଣଚେଲା ପଚାରିଲା, 'ତମେ ଦିହେଁ ଛାନିଆରେ କୁଆଡ଼େ ଧାଉଁଛ ?' କୁକୁଡ଼ା ସବୁକଥା କହିବାରୁ ସିଏ କୁକୁଡ଼ାର ଦୁଃଖ ବୁଝିପାରି କହିଲା, 'ଚାଲ ମୁଁ ତମ ସାଙ୍ଗରେ ଆସିବି । ତିନିକୁ ଏକ୍ ସରି ନୁହେଁ।' ଏବେ କୁକୁଡ଼ା, ଛୁଞ୍ଚି ଓ ଲୁଣଚେଲା ଏକାସାଙ୍ଗେ ଚାଲିଲେ । ବାଟରେ ଠେଙ୍ଗା ସଙ୍ଗେ ଦେଖାହେଲା। ଠେଙ୍ଗା କୁକୁଡ଼ାର ଦୁଃଖ ଶୁଣି କହିଲା, 'ଚାଲ ମୁଁ ତମ ସାଙ୍ଗରେ



ଆସିବି । ଚାରିକୁ ଏକ୍ ସରି ନୁହେଁ।' ଏବେ ଚାରିଜଣ ସାଙ୍ଗ ହୋଇ କୁକୁଡ଼ାର ଘରେ ପହଞ୍ଚିଲେ ।

ମାଙ୍କଡ଼ ଆହୁରି ଘରକୁ ଫେରିନଥାଏ । ମାଙ୍କଡ଼କୁ ପାନେ ଦେବାପାଇଁ ଘର ଭିତରେ ସେମାନେ ଲୁଚି ବସିଲେ । ଛୁଞ୍ଚି ଚଟାଣ ଫାଙ୍କରେ ଦେହକୁ ଲୁଚାଇ ମୁଣ୍ଡ ଟେକି ବସିରହିଲା । ଲୁଣଟେଳା ଚୂଲିର ପାଉଁଶ ଭିତରେ ପଶିଲା । ଠେଙ୍ଗା କବାଟ କଣେ ଜଗି ରହିଲା । ଆଉ କୁକୁଡ଼ା ଓରା ଉପରକୁ ଚଢ଼ିଗଲା । ସନ୍ଧ୍ୟାହେଲାରୁ କ'ଣ ସବୁ ବକର ବକର ହେଇ ମାଙ୍କଡ଼ ଘରକୁ ଫେରିଲା । ଏମାନେ ସବୁ ଘରେ ଲୁଚିଛନ୍ତି, ମାଙ୍କଡ଼ କେମିତି ବା ଠଉରେଇ ଥାଆନ୍ତା । ସେ ଚୁଲିରେ ନିଆଁ ଧରେଇବାକୁ ଚେଷ୍ଟାକଲା । ଲୁଣ ଚଡ଼ଚଡ଼ ହେଇ ଫୁଟି ମାଙ୍କଡ଼ର ମୁହଁସାରା ଘାଏଲା ହେଇଗଲା । ସେ ଛାନିଆ ହେଇ ଧପ୍‌କିନା ଚଟାଣ ଉପରେ ବସିପଡ଼ିଲା । ଏତିକିବେଳେ ଛୁଞ୍ଚି ତା' ଦେହରେ ଗଳିଗଲା ଏବଂ ସେ ଯନ୍ତ୍ରଣାରେ ରଡ଼ିକଲା । ଆଉ ଠିକ୍ ଏତିକି ବେଳେ ଠେଙ୍ଗା କବାଟ କୋଣରୁ ବାହାରିପଡ଼ି ମାଙ୍କଡ଼କୁ ପିଟିବା ଆରମ୍ଭ କଲା । ଓରା ଉପରେ ବସିରହି କୁକୁଡ଼ା ଏ ମଜା ଦେଖୁଥିଲା । ମାଙ୍କଡ଼ ବାଡ଼ିଆ ଖାଇବାରୁ ସେ 'କୁକୁରେ କୁ', 'କୁକୁରେ କୁ' କହି ନାଚିବାକୁ ଲାଗିଲା। ମାଙ୍କଡ଼ ବାଡ଼ିଆ ଖାଇ ପ୍ରାଣ ବିକଳରେ ଘର ଛାଡ଼ି ପାଖ ଜଙ୍ଗଲକୁ ପଳାଇ ଗଲା। ସେ ଭୁଲ୍‌ରେ ସୁଦ୍ଧା ଆଉ ଘରକୁ ବାହୁଡ଼ିନି । ଏବେ ଏହି ଚାରି ସାଙ୍ଗ ଆନନ୍ଦରେ ସେଇ ଘରେ ରହିଲେ ।



# ମହାବଳ ବାଘ ଓ ବେଙ୍ଗ

ମଧ୍ୟ ଭୁଟାନର କୌଣସି ଏକ ଗହଳିଆ ଜଙ୍ଗଲର ଶେଷ ମୁଣ୍ଡରେ ବେଙ୍ଗଟିଏ ସକାଳ ଖରାରେ ମଉଜ କରୁଥାଏ । ଗୋଟିଏ ବଡ଼ ପଥର ଖଣ୍ଡ ଉପରେ ବସି ଅଧାମେଲା ନିଦୁଆ ଆଖିରେ ସେ ସତେ ଯେମିତି ପୃଥିବୀକୁ ନୂଆ କରି ଦେଖୁଥାଏ । ହଠାତ୍ ଜଙ୍ଗଲ ଭିତରୁ ମହାବଳ ବାଘଟିଏ ଗର୍ଜନ ତର୍ଜନ କରି ବେଙ୍ଗ ଆଡ଼କୁ ମାଡ଼ି ଆସିଲା ଆଉ ବେଙ୍ଗକୁ ଦେଖି ପଚାରିଲା, 'ବେଙ୍ଗ ଭାଇ, ତମେ ଏଠି କ'ଣ କରୁଛ ?'

ମହାବଳ ବାଘକୁ ହଠାତ୍ ଦେଖି ବେଙ୍ଗ ଛାନିଆ ହୋଇଗଲା । ଟିକିଏ ନିଃଶ୍ୱାସ ନେଲାପରେ ବାଘକୁ ଉତ୍ତରଦେଲା, 'ମୁଁ ଏଇଠି ଖରାରେ ବସି ମଉଜ କରୁଛି ।' ବାଘ ଡିଆଁଟିଏ ମାରି ପଥର ଉପରକୁ ଆସି ବେଙ୍ଗ ପାଖରେ ଟିକିଏ ଗଡ଼ିଗଲା । ବେଙ୍ଗକୁ ଆଦେଶ ଦେଲାଭଳିଆ କହିଲା, 'ବେଙ୍ଗ ଭାଇ, ମୋ ଦେହରୁ ଉକୁଣି ବାଛିଲୁ ।' ବେଙ୍ଗ ବିଚରା କରେ କ'ଣ ! ସେ ବାଘ ପିଠି ଉପରକୁ କୁଦାଟିଏ ମାରି ତା' ଦେହରୁ ଉକୁଣି ବାଛିବା ଆରମ୍ଭ

କଲା । ସକାଳର କଅଁଳିଆ ଖରା, ତା' ସାଙ୍ଗରେ ବେଙ୍ଗ ଆଙ୍ଗୁଠିର ସୁଲୁସୁଲିଆ ଚାଳନାରେ ବାଘକୁ ନିଦ ଆସିଗଲା । ବାଘ ଘୁଙ୍ଗୁଡ଼ି ମାରିବା ଆରମ୍ଭ କଲା ।

ବାଘର ଉପସ୍ଥିତି ବେଙ୍ଗକୁ ଅସ୍ଥିର କଲା । ତା' ମନରେ ଭୟ ଆସୁଥାଏ । ବାଘକୁ କି ବିଶ୍ୱାସ । କେତେବେଳେ ସେ ବେଙ୍ଗକୁ ଖାଇଦେବ । ବେଙ୍ଗ ବାଘ ମୁହଁରୁ କେମିତି ଫିଟିପାରିବ ଚିନ୍ତାକଲା । ସେ ଉକୁଣି ଖୋଜିଲା ପରି ଅଭିନୟ କରୁଥାଏ କିନ୍ତୁ ଅସଲରେ ବାଘ ଦେହରୁ ପୁଳାପୁଳା ଲୋମ ଉପାଡ଼ି ତା' ମୁହଁରେ, କାନରେ, ମଳଦ୍ୱାରରେ ଗେଞ୍ଜି ଦେଉଥାଏ । ବେଙ୍ଗ ଯେତେବେଳେ ଆନ୍ଦାଜ କରିନେଲା ଯେ ଆଉ ସେ ବେଙ୍ଗ ଭଳି ଦେଖାଯାଉନି, ବାଘକୁ ନିଦରୁ ଉଠେଇ ପ୍ରଶ୍ନ କଲା, 'ବାଘ ମହାରାଜ ତମେ କ'ଣ ସବୁ ଖାଅ ?'

ବାଘ ତା' ନିଦୁଆ ଆଖିରେ ଲମ୍ବା ହାଇଟିଏ ମାରି ଉତ୍ତର ଦେଲା, 'ମୁଁ କେତେ କ'ଣ ଖାଇପାରେ ।' ବେଙ୍ଗର ପ୍ରଶ୍ନ ପଚାରିବାରେ ଯେମିତି ଆଗ୍ରହ ନାହିଁ, ସେମିତି ଭାବରେ ପଚାରିଲା, 'ମହାରାଜ କେତେ କ'ଣ ମାନେ ?'

ବାଘ ଏବେ ଉତ୍ତର ଦେଲା, 'ମତେ ଯେତେବେଳେ ବେଶି ଭୋକ ଲାଗେ ମୁଁ ଗାଈ, ଗୋରୁ, ଘୋଡ଼ା ଭଳିଆ ବଡ଼ ବଡ଼ ଜନ୍ତୁଜୁନ୍ତା ଖାଏ । ମୁଁ ସାଧାରଣ ଭାବରେ ହରିଣଟିଏ, ବାର୍‌ହାଟିଏ ବା ସେଭଳି ଛୋଟିଆ ପଶୁଟିଏ ଖାଇବାକୁ ମିଳିଗଲେ ଖୁସି ହେଇଯାଏ । ମୁଁ ଯେତେବେଳେ ଭୋକରେ ଆଉଟୁ ପାଉଟୁ ହେଉଥାଏ ଏବଂ ବଡ଼ ଜନ୍ତୁଜୁନ୍ତା ପାଏନି, ଯେତେ ଛୋଟିଆ ପଶୁଟିଏ ହେଲେ ବି ଗିଳିପକାଏ, ଏଇ ଯେମିତି ଠେକୁଆ, ଗୁଣ୍ଡୁଚିମୂଷା ଏବଂ ବେଳେବେଳେ ବେଙ୍ଗ ମଧ୍ୟ ।'

'ବେଙ୍ଗ' ଶବ୍ଦଟି କାନରେ ପଡ଼ିବାରୁ ବେଙ୍ଗର ଛାତି ଧଡ଼ଧଡ଼ ହେଲା । ଦାନ୍ତମାଡ଼ି ଥରିବାକୁ ଲାଗିଲା । ତାର ହାତଗୋଡ଼ ଥୟ ଧରିଲାନି । ସେ କଷ୍ଟେମଷ୍ଟେ ନିଜକୁ ସମ୍ଭାଳି ନେଲା ।

ଏବେ ବାଘ ବେଙ୍ଗଠାରୁ ଜାଣିବାକୁ ଚାହିଁଲା, ବେଙ୍ଗ କ'ଣ ଖାଏ । ବେଙ୍ଗ ଏଭଳି ଗୋଟିଏ ସୁଯୋଗ ଅପେକ୍ଷାରେ ଥିଲା । ସେ ଚଟାପଟ ଉତ୍ତର



ଦେଲା,'ବାଘ ମହାରାଜ, ମୁଁ ତ ଛୋଟିଆ ପ୍ରାଣୀଟିଏ, ଏଣୁ ସାଧାରଣତଃ ଛୋଟ ଛୋଟ ଜନ୍ତୁଜୁନ୍ତା ଖାଏ । କିନ୍ତୁ ମତେ ଯେତେବେଳେ ବେଶି ଭୋକ ହୁଏ ହରିଣ, ମିରିଗ, ଗାଈଗୋରୁ ଏଭଳିକି ବାଘ ମଧ୍ୟ ଖାଇଯାଏ ।' 'ବାଘ' ଶବ୍ଦଟି ଶୁଣିଲା ପରେ ବାଘ କାନ ଠିଆ କରି ବେଙ୍ଗକୁ ଆଉଥରେ ପଚାରିଲା, 'ବେଙ୍ଗ ଭାଇ ! ତମେ କ'ଣ ସତରେ ବାଘ ଖାଇବା କଥା କହିଲ, ନା ଖାଲି ପରିହାସ କରୁଛ ?' ଏତକ କହିସାରି ବାଘ ହସିବାକୁ ଲାଗିଲା । ସେମାନଙ୍କ ଭିତରେ ହେଉଥିବା କଥାଭାଷାର ମୋଡ଼ରେ ବେଙ୍ଗ ମହାଖୁସି । ଏଣୁ ବେଙ୍ଗ ନିଧଡ଼କରେ ତା' କଥାରେ ଆଗେଇଲା । କହିଲା, 'ମୁଁ ଏଠାକୁ ଆସିବା ଆଗରୁ ବାଘଟିଏ ଖାଇ ଆସିଛି, ମୋ ପାଟିକୁ ଦେଖ ।' ବାଘ ବସିଥିବା ଜାଗାରୁ ଦି'ପାହୁଣ୍ଡ ପଛକୁ ହଟିଯାଇ ବିଶ୍ୱାସ କରିପାରୁ ନଥିବା ଭଳି ବେଙ୍ଗକୁ ଅନେଇ ରହିଲା । ବେଙ୍ଗ ଜୋର୍ ଦେଇ କହିଲା, 'ମହାରାଜ ମୋ ପାଟି ଆଉ ପଛପଟକୁ ଭଲ ଭାବରେ ଦେଖ, କେମିତି ବାଘର ଲୋମ ସବୁ ଲାଖିଯାଇଛି ।' ବାଘ ବେଙ୍ଗକୁ ଆଉଥରେ ଅନେଇଲା । ମନେମନେ ଭୟ ପାଇ ଗୋଟିଏ ଲମ୍ଫକୁଦା ମାରି ଜଙ୍ଗଲ ଭିତରେ କୁଆଡ଼େ ଅଦୃଶ୍ୟ ହୋଇଗଲା ।

ବାଘ ପ୍ରାଣ ଭୟରେ ଧାଉଁଥିବା ବେଳେ ଗୋଟିଏ ବିଲୁଆ ତାକୁ ଦେଖିଲା । ବିଲୁଆ ପଚାରିଲା, 'ବାଘ ମହାରାଜ ଖବର କ'ଣ? ଏମିତି ଛାନିଆରେ କାହିଁକି ଦୌଡୁଛ ?' ବାଘ ଘଟିଯାଇଥିବା ସବୁ କଥା ବିଲୁଆକୁ କହିଲା । ବାଘ କଥା ଶୁଣି ବିଲୁଆ ହସିଲା ଆଉ କହିଲା, 'ତମେ ବେଙ୍ଗ କଥାରେ ଠକେଇ ହେଇ ଯାଇଛ । ମାଛି ଭଳିଆ ଛୋଟିଆ ଜୀବ ଛଡ଼ା ବେଙ୍ଗର ଆଉ କିଛି ଖାଇପାରିବାର ଶକ୍ତି ନାହିଁ । ଆସ ଦୁହେଁ ସାଙ୍ଗ ହେଇ ଯିବା ବେଙ୍ଗକୁ ଦେଖି ଆସିବା ।'

'ନାଇଁ ନାଇଁ, ମୁଁ ବେଙ୍ଗ ପାଖକୁ ଆଉ ଯିବିନି ।' ଏତକ କହିଦେଇ ବାଘ ଜଙ୍ଗଲ ଭିତରକୁ ଧାଇଁବାକୁ ଆରମ୍ଭ କଲା । ପାଖ ଗଛରେ ଝୁଲୁଥିବା ଲତାଟିଏକୁ ଭିଡ଼ିଆଣି ବିଲୁଆ ବାଘକୁ ସାହସ ଦେଇ କହିଲା, 'ଲତାର ଗୋଟିଏ ପାଖ ମୁଁ ମୋ ବେକରେ ଗୁଡ଼େଇ ଦେଉଛି, ତମେ ଅନ୍ୟ ପାଖଟି ନିଜ ବେକରେ ଗୁଡ଼େଇଦିଅ ଆଉ ମୋ ସାଙ୍ଗରେ ବେଙ୍ଗ ପାଖକୁ ଚାଲ ।'

ସେ ଦିହେଁ ପୋଖରୀ ପାଖରେ ପହଞ୍ଚିଲେ । ବେଙ୍ଗ ପଥର ଉପରେ ସେମିତି ନିଧଡ଼କ ବସିଥାଏ । ସେ ଦୁହିଁଙ୍କୁ ଦେଖି ବେଙ୍ଗ ଖୁସିରେ କହିଲା, 'ବିଲୁଆ ଭାଇ, ଖୁବ୍ ଭଲ କରିଛ । ମୋ ଖାଇବା ପାଇଁ ବାଘଟିଏ ଧରି ଆଣିଛ । ମୋତେ ଭୀଷଣ ଭୋକ ହେଉଥିଲା ।' ବାଘ କାନରେ ଯେମିତି ବେଙ୍ଗର କଥାତକ ପଡ଼ିଛି, ସେ ବିଜୁଳି ବେଗରେ କୁଦାଟିଏ ମାରି ଜଙ୍ଗଲ ଭିତରେ ଅଦୃଶ୍ୟ ହୋଇଗଲା । ବିଲୁଆ ବାଘ ସାଙ୍ଗରେ ସମାନ ଭାବରେ କି ଭଳିଆ ଡିଆଁ ମାରି ପାରନ୍ତା । ସେ ଲତାଦ୍ୱାରା ଛନ୍ଦି ହୋଇ ଯିବାରୁ ନିଃଶ୍ୱାସ ରୁନ୍ଧି ହୋଇ ମରିଗଲା । ବିଲୁଆ ପାଟି ଆଁ କରି ମରିପଡ଼ିଛି । ତା' ଖୋଲାଦାନ୍ତ ଗୁଡ଼ିକୁ ଦେଖିଲେ ଲାଗୁଛି ସେ ସତେ ଯେମିତି ହସୁଛି । ବାଘ ରାଗିଯାଇ ବଡ଼ ପାଟିରେ କହିଲା, 'ଆଉ ହସ ନାହିଁ । ମୋତେ ପଟାପଟି କରି ବାଘଖିଆ ବେଙ୍ଗ ପାଖକୁ ନେଇ ଆସିଥିଲୁ । ରକ୍ଷା ହେଇଗଲା ମୁଁ ମୂଢ଼ ତା' କବଳରୁ ଖସିଗଲି ।'

ବାଘ ବେଙ୍ଗକୁ ଏତେ ଡରିଯାଇଥିଲା ଯେ ଆଉ ପୋଖରୀ ପାଖ ଜଙ୍ଗଲରେ ନରହି ବହୁଦୂରରେ ଥିବା ଜଙ୍ଗଲକୁ ଚାଲିଗଲା ।



# ଜଳରାକ୍ଷସ ଓ ହାତୀ

ଜଳରାକ୍ଷସର ନାଁ ତ୍ସେଓ୍ୱା ରୁଟୁ । ସିଏ ସବୁଠୁ ବଳୁଆ ଓ ଭୟଙ୍କର ଜଳରାକ୍ଷସ । ସହସ୍ର ଶୁଣ୍ଢ ଥିବା ଗୋଟିଏ ବିରାଟ ମଇଁଷି ଭଳି ସେ ଦେଖାଯାଏ । ରକ୍ତମୁଖା ରାକ୍ଷସଟିଏ । ଭୁଟାନର ୱାଙ୍ଗଡ଼ି ନଦୀର ପୋଲ ତଳେ ରହେ । ପ୍ରତିଦିନ ଗାଈଟିଏ ବା ମଣିଷଟିଏ ନ ହେଲେ ତା'ର ପେଟ ପୂରେନି । ଗୋଟିଏ ଜନ୍ତୁ ବୋଲି ନୁହଁ, ଦିନକ ଭିତରେ ଯେତେ ଜନ୍ତୁ ହେଲେ ବି ତାକୁ ନିଅଣ୍ଟ । ତା'ର ଗୋଟିଏ ଅଦ୍ଭୁତ ଶକ୍ତି ଥିଲା । ପୋଲ ଉପରେ ଯିଏ ଯାଏ ତାର ଛାଇ ନଦୀର ପାଣିର ପଡ଼େ । ଜଳରାକ୍ଷସ ପ୍ରଥମେ ଛାଇଟିକୁ କାବୁ କରିଦେଇ ସେଇ ଛାଇ ମାଧ୍ୟମରେ ପୋଲ ଉପର ଦେଇ ଯାଉଥିବା ମଣିଷ ବା ପଶୁର ରକ୍ତ ଶୋଷାଡ଼ି ନିଏ । ଦେହରୁ ରକ୍ତ ନିଗିଡ଼ି ଗଲା ପରେ ପ୍ରାଣୀଟି ଶୋଥା ପଡ଼ିଯାଇ ପୋଲ ଉପରୁ ନଦୀ ଭିତରକୁ ଗଡ଼ିଯାଏ । ଆଉ ତ୍ସେଓ୍ୱା ରୁଟୁ ତାର ସହସ୍ର ଶୁଣ୍ଢରେ ଶିକାରକୁ ଜାବୁଡ଼ି ଧରି ମହା ଆନନ୍ଦରେ ଖାଏ ।

ଏହି ଜଳରାକ୍ଷସକୁ ଡରି ପୋଲ ଉପରେ ଗାଁର କେହି ହେଲେ ଚଳପ୍ରଚଳ ହେଲେ ନାହିଁ, ସେମାନଙ୍କ ଗାଈ ଗୋରୁ ମଧ୍ୟ ଛାଡ଼ିଲେ ନାହିଁ, ପୋଲ ପାଖାପାଖି ଗାଁ ଗଣ୍ଡାରେ ଭୟର ଲହରୀ ଖେଳିଗଲା । ଦିନେ ଗାଁ ଗଣ୍ଡାର ସବୁଲୋକ ଗାଁ ମୁଖିଆଙ୍କ ପାଖରେ ଜମାହୋଇ ସେମାନଙ୍କ ଗୁହାରି କହିଲେ, 'ସ୍ରେଓ୍ୱା ରୁଟୁର କାରବାରରେ ଆମେ ହିନସ୍ତା ହେଇ ସାରିଲୁଣି । ସେଇଟା ମୋଟେ ଦେବତା ନୁହେଁ । ହେଇପାରେ ସେଇଟା ଗୋଟିଏ ରାକ୍ଷସ ନିଶ୍ଚୟ । ତା'ଠାରୁ ଆମକୁ ନିସ୍ତାର ପାଇବାକୁ ହେବ । ନ ହେଲେ ଗାଁ ଗଣ୍ଡାରେ ଆଉ କେହି ବଞ୍ଚିବେ ନାହିଁ ।'

ଗାଁ ମୁଖିଆ ଖୁବ୍ ବୁଦ୍ଧିଆ ଓ କାମିକା ଲୋକ । ସେ କିଛି ଗୋଟାଏ ଉପାୟ ପାଞ୍ଚି ଗାଁ ଲୋକଙ୍କୁ ସାହାଯ୍ୟ କରିବାପାଇଁ ଚାହିଁଲା । ପାଖ ସହରରୁ ଗୋଟିଏ ଦନ୍ତାହାତୀ ମଗେଇଲା । ସେ କ'ଣ ଯୋଜନା କରୁଛି ତାହା କାହାକୁ କହିଲା ନାହିଁ । ସମସ୍ତେ ଆଗ୍ରହର ସହିତ କ'ଣ ହେଉଛି ଦେଖିବାକୁ ଅପେକ୍ଷା କରି ରହିଲେ । ସେଦିନ ଗାଁ ଗଣ୍ଡାରୁ ଲୁହା କଡ଼େଇ ଧରି ପୋଲ ପାଖରେ ପହଞ୍ଚିବାପାଇଁ ଶହେ ଜଣ ସ୍ତ୍ରୀ ଲୋକଙ୍କୁ ଡକେଇ ପଠାଇଲା । କ'ଣ ଘଟିବ ଦେଖିବାପାଇଁ ଅନ୍ୟ ଲୋକମାନେ ବି ସ୍ତ୍ରୀଲୋକଙ୍କ ପଛେ ପଛେ ପୋଲ ଆଡ଼େ ଚାଲିଲେ । କଡ଼େଇରେ ତତଲା ବାଲି ଭାଜିବା ପାଇଁ ଗାଁ ମୁଖିଆ ସ୍ତ୍ରୀ ଲୋକଙ୍କୁ ଆଦେଶ ଦେଲା । ତା'ପରେ ହାତୀଟିକୁ ପାଣି ଭିତରକୁ ସେ ବାଟ କଢ଼େଇ ନେଲା । ହାତୀ ତ କିଛି ଦିନ ହେଲା ପାଣିଠାରୁ ଦୂରେଇ ରହିଥିଲା । ସେ ପାଣିରେ ପଶୁ ପଶୁ ପାଣି ଉଠେଇ ଦେହରେ ଢାଳିଲା । ପାଣି ପିଇଲା ଓ ପାଣିରେ ଖେଳିଲା । ଲୋକମାନେ କ'ଣ ଘଟିବ ବୋଲି ଉତ୍କଣ୍ଠାରେ ଚାହିଁଛନ୍ତି । ହଠାତ୍ ମନେହେଲା ପାଣି ଦି'ଭାଗ ହେଇ ଯାଉଛି । ଜଳରାକ୍ଷସ ପାଣିରୁ ବାହାରି ତାର ଶୁଣ୍ଢମାନଙ୍କରେ ହାତୀର ଗୋଡ଼କୁ ଛନ୍ଦି ଦେଲା । ହାତୀ ଗର୍ଜନ କଲା ଏବଂ ନଦୀକୂଳ ଆଡ଼କୁ ବାହାରି ଆସିବାପାଇଁ ଚେଷ୍ଟା କଲା । ଜଳ ରାକ୍ଷସର ଅସୀମ ବଳ । ସେ ହାତୀର ଗୋଡ଼କୁ ଟାଣି

ଧରି ପାଣି ଭିତରକୁ ଭିଡ଼ିଲା । ହାତୀ ଓ ଜଳରାକ୍ଷସ ମଧ୍ୟରେ ଗର୍ଜନ ତର୍ଜନ ଓ ବଳ କଷାକଷି ବହୁତ ସମୟ ଧରି ଚାଲିଲା । ସମସ୍ତେ କୂଳରେ ଠିଆହେଇ ଛାନିଆ ହେଇ ଚାହିଁଥାନ୍ତି । ମନେହେଲା ହାତୀର ଶକ୍ତି ଅପେକ୍ଷା ଜଳରାକ୍ଷସର ବଳ ଊଣା ପଡ଼ିଲା । ହାତୀ ଧୀରେଧୀରେ ନଦୀକୂଳର ବାଲିଆଡ଼କୁ ଆଗେଇଗଲା । ତା' ପଛ ଗୋଡ଼ରେ ସ୍ତେଓ୍ୱା ରୁଟୁ ତାର ସହସ୍ର ଶୁଣ୍ଢରେ ଲାଖି ହେଇ ରହିଥାଏ । ଠିକ୍ ଏମିତି ଘଟିବ ବୋଲି ଗାଁ ମୁଖିଆ ଅନୁମାନ କରିଥିଲା ।

ହାତୀ ସଂପୂର୍ଣ୍ଣ ଭାବେ ନଦୀକୂଳ ବାଲି ଉପରକୁ ଉଠିଆସିଲା । ସମସ୍ତେ ଅବାକ୍ ହେଇ ଅନାଇ ରହିଛନ୍ତି । ହାତୀ ଆଣ୍ଠୁମାଡ଼ି ବସିଗଲା । ଜଳରାକ୍ଷସ ତ ତା' ଦେହରୁ ସବୁ ରକ୍ତ ଶୋଷାଡ଼ି ଦେଇଛି । ସିଏ ନିଜକୁ ଆଉ ସମ୍ଭାଳି ନପାରି ଗର୍ଜନ କରି ବାଲି ଉପରେ ଗଡ଼ି ପଡ଼ିଲା । ତା' ଦେହରୁ ପ୍ରାଣବାୟୁ ଉଡ଼ିଗଲା । ଗାଁର ମୁଖିଆ ଖୁସି ଯେ ସିଏ ଯେଭଳି ଚାହୁଁଛି ସେଭଳି ସବୁ ଘଟଣା ଘଟିଯାଉଛି । ସ୍ତ୍ରୀଲୋକମାନେ ଭାଜି ଭାଜି କଡ଼େଇରେ ବାଲିକୁ ନିଆଁ ଭଳି କରିସାରିଲେଣି । ମୁଖିଆ ଜଳରାକ୍ଷସ ଉପରେ କଡ଼େଇର ତତଲା ବାଲି ଢାଳିବା ପାଇଁ ସ୍ତ୍ରୀ ଲୋକମାନଙ୍କୁ କହିଲା । ଗାଁର ସାହସୀ ମାଇପିମାନେ ସ୍ତେଓ୍ୱା ରୁଟୁ ଉପରେ ତତଲା ବାଲି ଢାଳିଲେ । ଏବେ ଜଳରାକ୍ଷସ ଧୀରେ ଧୀରେ ବଡ଼ରୁ ଛୋଟ ହେବାକୁ ଲାଗିଲା । ସିଏ ବର୍ତ୍ତମାନ ଗୋଟିଏ ଗାଈର ଅନ୍ତ ବୁଜୁଳି ଭଳି ଦେଖାଗଲା । ବାସ୍ତବରେ ଏଇ ରାକ୍ଷସର ଆକାର ହିଁ ଏଇଆ । ରାକ୍ଷସଟି ଏବେ ଧ୍ୱଂସ ହେବାକୁ ଲାଗିଲା । କିନ୍ତୁ ତା'ର ଗୋଲିଆ ଆଖି ଦୁଇଟି ଜଳଜଳ ଆକାଶକୁ ଚାହିଁ ଥାଏ ।

ସମସ୍ତେ ମିଶି ଏବେ ରାକ୍ଷସଟିକୁ ନିଆଁରେ ସଂପୂର୍ଣ୍ଣ ପୋଡ଼ିଦେଇ ପାଉଁଶ କରିଦେଲେ । ଆଉ ତା' ପାଉଁଶକୁ ଗୋଟିଏ ମାଠିଆରେ ପୂରାଇ ମାଟିତଳେ ପୋତିଦେଲେ । ଆଉ ରାକ୍ଷସର ଭୟ ରହିଲାନି । ଲୋକେ ନଦୀ ପୋଲ ଉପରେ ସ୍ୱଚ୍ଛନ୍ଦରେ ଚଲାବୁଲା କଲେ ଆଉ ଶାନ୍ତିରେ ନିଃଶ୍ୱାସ ମାରିଲେ ।



# ଅପୁ

ଭୁଟାନ ଦେଶର କୌଣସି ଏକ ଗାଁରେ ଗୋଟିଏ ଗରିବ ପିଲା ରହୁଥିଲା । ତା ନାଁ 'ଅପୁ' । କେବଳ ଗାଈଟିଏ ଛଡ଼ା ତା'ର ଚଳିବାର ଆଉ କୌଣସି ବାଟ ନଥିଲା । ସିଏ ଗାଈ ନେଇ ଚରେଇବାକୁ ଜଙ୍ଗଲକୁ ଯାଏ । ଗାଈକୁ ସନ୍ତସନ୍ତିଆ ଘାସ ପଟାଳି ପାଖରେ ଛାଡ଼ି ଦେଇ ସେ ଜାଳେଣି କାଠ ସଂଗ୍ରହରେ ଲାଗିପଡ଼େ । ଦିନେ ସିଏ ଜାଳେଣିକାଠ ଗୋଟାଇବା ପାଇଁ ଗାଈ ଚରୁଥିବା ଜାଗା ପାଖରୁ ଜଙ୍ଗଲ ଭିତରେ ବହୁତ ବାଟ ଚାଲିଗଲା । ବହୁତ ସମୟ ପରେ ସିଏ ଜାଗାକୁ ଫେରି ଗାଈକୁ ଖୋଜିଲା । ହେଲେ ଗାଈର ଦେଖା ପାଇଲା ନାହିଁ । ଗାଈର ନାଁ ଧରି ବଡ଼ ପାଟିରେ 'ବଉଳା', 'ବଉଳା' ଡାକିଲା । କିନ୍ତୁ ଗାଈର ପତ୍ତା ପାଇଲାନି ।

ସନ୍ଧ୍ୟା ମାଡ଼ି ଆସୁଥାଏ । ମନେମନେ ଭାବିଲା, କାଲିକି ଆସି ଗାଈ ଖୋଜିବି । ଜାଳେଣି କାଠର ବିଡ଼ା ମୁଣ୍ଡରେ ଲଦି ଘରକୁ ବାହୁଡ଼ିଲା । ସଅଳ ସଅଳ ଘରେ ପହଞ୍ଚିବା ପାଇଁ ସେ ରାସ୍ତାରେ ଲମ୍ବା ଲମ୍ବା ପାଦ ପକାଇ ଯାଉଛି, ବାଟରେ ଦେଖିଲା ଗୋଟିଏ ମସ୍ତବଡ଼ ପଥର ଉପରେ ବୁଢ଼ୀଟିଏ ବସି ଥୁଡୁକୁଛି । ତା' ମୁହଁ ଓ ଦେହସାରା ଶିରା ପ୍ରଶିରା ଭର୍ତ୍ତି । ସିଏ ଅନ୍ଧୁଣୀ, ଏଣେ ବେକ ତଳେ ଗୋଟିଏ ବିରାଟ ଗଳଗଣ୍ଡ । ଏଭଳି ମଣିଷଟିଏ 'ଅପୁ' ଆଗରୁ କେବେ ଦେଖି ନଥିଲା । ତା' ମନରେ ଡର ପଶିଲା । ସେ ପାଖ ବୁଦାମୂଳେ ଲୁଚି ପଡ଼ିଲା ଏବଂ କ'ଣ ଘଟିବାକୁ ଯାଉଛି ଦେଖିବାକୁ ଅପେକ୍ଷାରେ ରହିଲା । ବୁଢ଼ୀ ତା'ର ଧଳାଦାନ୍ତକୁ କଡ଼ମଡ଼ କରୁଥାଏ । ଏବେ ସେ ପଥର ଚଟାଣରେ ହାତ ଦେଇ ଧୀରେ ଉଠି ଠିଆହେଲା । ଠିଆହେଲା ବେଳେ କହୁଥାଏ, 'ଆହା ଚୁ ଚୁ ଚୁ ।' ସେ ପଥରକୁ ଅନେଇ ଭୁଟାନିଜ୍ ଭାଷାରେ ପୁଣି କହିଲା, 'ଅପ୍ ବ୍ରାଫୁ ଗୋ ଫିଚ୍ ।' ଆମ ଭାଷାରେ ତା'ର ଅର୍ଥ ହେଲା, 'ଗୁମ୍ଫା କବାଟ ଖୋଲ ।' ସଙ୍ଗେ ସଙ୍ଗେ ପଥର ଖଣ୍ଡେ ଘୁଞ୍ଚିଗଲା ଏବଂ ଭୀଷଣ ଶବ୍ଦ କରି କଟ୍‌କଟ୍ ହେଇ କବାଟଟି ଖୋଲିଗଲା । ବୁଢ଼ୀ ଛୋଟେଇ ଛୋଟେଇ ଭିତରେ ପଶିଗଲା । 'ଅପୁ' କୌତୁହଳୀ ହୋଇ ଏ ଘଟଣା ଦେଖୁଥିଲା । ସିଏ ସାହସ କରି ପଥର ପାଖକୁ ଗଲା ଏବଂ ପଥରକୁ କହିଲା, 'ଅପ୍ ବ୍ରାଫୁ ଗୋ ଫିଚ୍ ।' ସେ ଡରିଡରି ଚାରି ଆଡ଼କୁ ଚାହୁଁଥାଏ । କାଳେ କିଛି ବିପଦ ମାଡ଼ି ଆସିବ ବୋଲି ସନ୍ଦେହ କରୁଥାଏ । ଏବେ ଗୁମ୍ଫାର କବାଟଟି ଖୋଲିଗଲା ଆଉ ସିଏ ମଧ୍ୟ ଗୁମ୍ଫା ଭିତରେ ପଶିଗଲା । ଭିତରକୁ ଯାଇ ଦେଖିଲା ଗୋଟିଏ ସୁନ୍ଦର ବିଳାସପୂର୍ଣ୍ଣ ଘର । ବୁଢ଼ୀ ଚୁଲି ପାଖରେ ବସି ନିଆଁ ଜାଳି ନିଜ ଦେହକୁ ସେକି ହେଉଛି ।

ସେ ଘର ଚାରିଆଡ଼େ ଆଖି ବୁଲେଇ ଆଣିଲା । ସବୁଆଡ଼େ ସୁନା, ରୁପା, ହୀରା, ନୀଳା, ମୋତି, ମାଣିକ୍ୟ ଭଳି ମୂଲ୍ୟବାନ ରତ୍ନ ଗଦା ହେଇଛି ଓ ଚଟାଣ ଉପରେ ଦାମିକା ବାସନ କୁସନ ସବୁ କୁଢ଼ ହୋଇଛି । 'ଅପୁ' ନିଜେ

ବୋହିପାରିଲା ପରି ମୂଲ୍ୟବାନ ରତ୍ନର ଗଣ୍ଠିଲିଟିଏ ବାନ୍ଧିଲା ଓ ଘର କଣରେ ରାତିସାରା ଲୁଚି ବସିଲା । ସକାଳ ହେଲା । ବୁଢ଼ୀ 'ଅପ୍ ବ୍ରାଫୁ ଗୋ ଫିଚ୍' କହିବାରୁ ଗୁମ୍ଫାର ଦ୍ୱାର ଖୋଲିଗଲା । ବୁଢ଼ୀ ଗୁମ୍ଫାରୁ ବାହାରି ପଥର ଉପରେ ବସି ଖରା ପୋଇଁବାକୁ ଲାଗିଲା । ଖୋଲା ପଡ଼ିଥିବା କବାଟର ସୁଯୋଗ ନେଇ ଅପୁ ରତ୍ନ ଗଣ୍ଠିଲି ଧରି ଗାଁକୁ ପଳେଇଗଲା ।

'ଅପୁ' ତାର ଦୁଃସାହସିକ କାମର ବିବରଣୀ ଗାଁରେ ସବୁ ସାଙ୍ଗମାନଙ୍କୁ କହିଲା । ଗାଁର ସବୁଠାରୁ ଧନୀ ପିଲାଟିଏ 'ଅପୁ'ର କଥା ଶୁଣି, ରତ୍ନ ଗଣ୍ଠିଲି ଦେଖି ଲୋଭେଇଗଲା । ମନକୁ ମନ କହିଲା ଏଭଳି ରତ୍ନ ନ ପାଇଲେ ଜୀବନଟି ବୃଥା । ସିଏ କାହାକୁ କିଛି ନକହି ଜଙ୍ଗଲ ଆଡ଼େ ମୁହାଁଇଲା । ଅପୁ ବଖାଣି ଥିବା ସବୁକଥା ଯାକ ସତ । ସେଠି ସେଇ ପଥର ଅଛି । ସିଏ ଦେଖୁଛି ପଥର ଗୁମ୍ଫାର କବାଟ ଖୋଲିଗଲା । ବୁଢ଼ୀଟିଏ ପଦାକୁ ଆସି ପଥର ଉପରେ ବସିଲା । ସିଏ ଗୁମ୍ଫାର କବାଟ ଦେଇ ଲୁଚିଛପି ଭିତରକୁ ପଶିଲା । ବୁଢ଼ୀର କ'ଣ ହେଲା କେଜାଣି କିଏ ଜଣେ ଚୋର ତା' ଘରେ ପଶିଛି ବୋଲି ସେ ଠଉରେଇ ନେଲା । ସେ ମଣିଷ ଗନ୍ଧ ବାରି ପାରିଲା । ସେ ଗୁମ୍ଫା ଭିତରେ ପଶି ଚାରିଆଡ଼କୁ ନଜର କଲା । ଆଉ ମନ୍ତ୍ରଟିଏ ପଢ଼ିଲା, 'ଆନେ ଆନୋ' । ଆମ ଭାଷାରେ ତାହା ହେଲା, 'ମତେ ସଜ ମାଂସ ଖାଇବାକୁ ମିଳୁ ଆଉ ତାଜା ରକ୍ତ ପିଇବାକୁ ମିଳୁ ।' ଗୁମ୍ଫାରେ ଲୁଚି ପଶିଥିବା ପିଲାଟିକୁ ଠାବ କରିବାକୁ ବୁଢ଼ୀକୁ ବେଶି ସମୟ ଲାଗିଲାନି । ବୁଢ଼ୀ ତାକୁ ଯେମିତି ପାଇଛି ତାକୁ ମାରି ତା'ର ରକ୍ତ ମାଂସ ସଙ୍ଗେ ସଙ୍ଗେ ଖାଇଗଲା ।

ବୁଢ଼ୀଟି ସତରେ ଗୋଟିଏ ଅସୁରୁଣୀ । ସିଏ ପଥର ଉପରେ ଏଭଳି ଅଭାଗା ଶିକାରର ତଲାସରେ ଥାଏ । ଯିଏ ବାଟହୁଡ଼ି ତା' ଗୁମ୍ଫା ପାଖକୁ ଆସେ ତାକୁ ଅସୁରୁଣୀ ଖାଇଯାଏ । ଖୁବ୍ କମ୍ ଶିକାର ବେଳେବେଳେ ତା' କବଳରୁ ଖସିଯାଆନ୍ତି । ସେମାନେ ବାସ୍ତବିକ ଭାଗ୍ୟବାନ ।



# ବୋକା ଚିତାବାଘ

ଭୁଟାନର ପାହାଡ଼ ଘେରା ନିଘଞ୍ଚ ଜଙ୍ଗଲ ଭିତରେ ଚିତାବାଘଟିଏ ରହୁଥାଏ । ସେହି ଜଙ୍ଗଲରେ ରହୁଥିବା ବିଲୁଆଟିଏ ଚିତାବାଘକୁ ଏମିତି ଥରେ ଚିତାକାଟି ଦେଇଥିଲା ଯେ ବାଘ ଅପମାନରେ ଘାଣ୍ଟି ହେଉଥିଲା । ସିଏ ସେହିଦିନ ଠାରୁ ପ୍ରତିଜ୍ଞା କରିଥିଲା ବିଲୁଆକୁ ଧରିବ ଆଉ ତାକୁ ପ୍ରାଣରେ ମାରିଦେବ । ସେ ବିଲୁଆକୁ ଖୋଜି ବୁଲୁଥିଲା । ଦିନେ ଚିତାବାଘ ଦେଖିଲା, ବିଲୁଆ ଗୋଟିଏ ହ୍ରଦକୂଳରେ ବସିଛି ଏବଂ କୌଣସି ଏକ କାମରେ ସଂପୂର୍ଣ୍ଣ ବୁଡ଼ିଯାଇଛି । ବାଘ ବିଲୁଆ ପାଖକୁ ଗଲା । ବାଘ ତା' ପାଖକୁ ଆସୁଥିବା ଦେଖି ବିଲୁଆ ବାଘକୁ ଶାନ୍ତ ରହିବାପାଇଁ କହିଲା । ବିଲୁଆର କଥା ଶୁଣି ବାଘ ଆହୁରି ରାଗିଯାଇ ବଡ଼ ପାଟିରେ କହିଲା, "ତୁ'ଟା ଗୋଟେ ବାଜେ ବିଲୁଆ । ତୁ କ'ଣ ଭାବିଛୁ ଗତଥର ଭଳି ଏଥର ମଧ୍ୟ ମୋତେ ଠକିଦେବୁ ? ଏଥରକ ତୋତେ ମୁଁ ସହଜରେ ଛାଡ଼ୁନି, ନିଶ୍ଚୟ ଜୀବନରେ ମାରିଦେବି ।"

ବାଘର ଗର୍ଜନ ଶୁଣି ବିଲୁଆ ଯେମିତି ଜମାରୁ ଆଚମ୍ବିତ ନୁହେଁ, ସେମିତି ବ୍ୟବହାର କରି ଅତି ଧୀର ଓ ଶାନ୍ତ ଭାବରେ କହିଲା, "ଆଚ୍ଛା ବାଘ ! କହିବ କି ତମର ସମସ୍ୟା କ'ଣ ? ହୁଏତ ମୁଁ ତୁମକୁ ସାହାଯ୍ୟ କରିପାରେ ।"

"ଗଲାଥର ତୁ ମୋ ପାଖରେ ଯେଉଁଭଳି ଧପାବାଜି କଲୁ ଜଙ୍ଗଲର ସବୁ ପ୍ରାଣୀ ମୋତେ ପରିହାସ କଲେ", ବାଘ କହିଲା ।

ବିଲୁଆ କିଛି ନଜାଣିଲା ପରି ପଚାରିଲା, "ତମେ କେଉଁ ଜଙ୍ଗଲ କଥା କହୁଚ ?"

"ଏଇ ପାହାଡ଼ ପଛପଟର ଜଙ୍ଗଲ", ଚିତାବାଘ ଉତ୍ତର ଦେଲା ।

ବିଲୁଆ କହିଲା, "ତମେ ଯାହା କହୁଛ ମୁଁ ଅନୁମାନ କରିପାରୁଛି । ତମ କଥାରେ ମସ୍ତବଡ଼ ଭୁଲ୍‌ଟିଏ ରହି ଯାଇଛି । ତମେ ଆଉ କେଉଁ ବିଲୁଆ କଥା କହୁଛ । ମୁଁ ତ ଏହି ହ୍ରଦର ପରିସୀମା ଡେଇଁ ଅନ୍ୟ କେଉଁଆଡ଼େ ଯାଏ ନାହିଁ । ଆମର ଗୋଷ୍ଠୀ ସଂପୂର୍ଣ୍ଣ ଅଲଗା । ଆମେ ମାଛ ଖାଇ ବଞ୍ଚୁଥିବା ପ୍ରାଣୀ । ଏଣୁ ଯେଉଁଠି ପାଣି ଆଉ ମାଛ ଆମେ ସେଇଠି ହିଁ ରହୁ ।"

ବିଲୁଆ କଥା ଶୁଣି ଚିତାବାଘ ଖୁସି ହୋଇ ବିଲୁଆକୁ ପଚାରିଲା, "ଆଚ୍ଛା, ତମେ ମାଛ ମାରୁଛ କେମିତି ?"

ବିଲୁଆ କହିଲା, "ଓ । ଏକଥା ଭାରି ସହଜ । ମୁଁ ମୋ ଲାଙ୍ଗୁଡ଼ଟି ହ୍ରଦର ପାଣି ଭିତରେ ବୁଡ଼େଇ କୂଳରେ ବସିରହେ । ମାଛମାନେ ଆପେ ଆପେ ଲାଙ୍ଗୁଡ଼ରେ ଲାଖିଯାଆନ୍ତି । ତା'ପରେ ମୁଁ ମୋ ଲାଙ୍ଗୁଡ଼ଟିକୁ ଟାଣିଆଣେ ଆଉ ସେଥିରେ ଯେତେକ ମାଛ ଲାଗିଥାନ୍ତି ତାହା ମୋର ଖାଦ୍ୟ ପାଇଁ ଯଥେଷ୍ଟ ହୋଇଥାଏ ।"

ବାଘ କହିଲା, "ଦେଖି ମୁଁ ଥରେ ଚେଷ୍ଟା କରେ ।"

ବିଲୁଆ ବାଘକୁ ମନାକଲା । କହିଲା, "ଏଇଟା ଆମମାନଙ୍କର ବଞ୍ଚିବାର ଉପାୟ । ମୁଁ ତୁମକୁ ତାହା କରେଇ ଦେବିନି ।"

ବୋକା ବାଘ ଅନୁନୟ ବିନୟ ହୋଇ କହିଲା, "ଥରେ ମୋତେ ଅନୁମତି ଦିଅ ।"

ବିଲୁଆ କହିଲା, "ଠିକ୍ ଅଛି । ତମେ ହ୍ରଦର ପାଣିରେ ତମ ଲାଙ୍ଗୁଡ଼ଟି ବୁଡ଼େଇ ରାତିସାରା ବସିବ । ସକାଳୁ ସୂର୍ଯ୍ୟ ଉଦୟ ହେବା ଦେଖିଲେ ଆଉ ଗଛମାନଙ୍କ ମୁଣ୍ଡ ଉପରେ ଖରା ପଡ଼ିଲେ ଲାଙ୍ଗୁଡ଼ଟିକୁ ପାଣିରୁ ବାହାର କରିବ । ଦେଖିବ କେତେ ମାଛ ଲାଖିଥିବେ ।"

ବିଲୁଆ ବତେଇବା ପ୍ରକାରେ ବାଘ ତା ଲାଙ୍ଗୁଡ଼କୁ ଝୁଲେଇ ରାତିସାରା ହ୍ରଦକୂଳେ ବସି ରହିଲା । ଏ ଭିତରେ ବିଲୁଆ ଜଙ୍ଗଲ ଭିତରକୁ ଚମ୍ପଟ ମାରିଲା । ଶୀତ ରାତି । ହେମାଳ ପାଣି । ନୀଳ ଆକାଶରେ ତାରା ଗଣି ଗଣି ବାଘ ହଲଚଲ ନହେଇ ବସି ରହିଲା । ସେ ମନେମନେ ଭାବିଲା, ସକାଳେ ବହୁତ ଗୁଡ଼ିଏ ମାଛ ଲାଙ୍ଗୁଡ଼ରେ ଲାଗିକି ରହିବେ । ହେଲେ ତା' ଲାଙ୍ଗୁଡ଼ଟି ବରଫ ଭିତରେ ଏମିତି ଲାଖିଗଲା ଯେ ସୂର୍ଯ୍ୟ ଉଦୟ ହେଲାପରେ ସକାଳୁ ବାଘ ତା' ଲାଙ୍ଗୁଡ଼ଟିକୁ ପାଣି ଭିତରୁ ବାହାର କରିବାପାଇଁ ଯେତେ ଚେଷ୍ଟା କଲେ ବି ପାରିଲାନି । ଶେଷରେ ବହୁ କଷ୍ଟରେ ସିଏ ଲାଙ୍ଗୁଡ଼ଟିକୁ ସିନା କାଢ଼ି ପାରିଲା କିନ୍ତୁ ଲାଙ୍ଗୁଡ଼ର ଚମଡ଼ା ଖୋଳଟି ହ୍ରଦ ଭିତରେ ରହିଗଲା । ବାଘ ଯନ୍ତ୍ରଣାରେ ଛଟପଟ ହେଲା ଏବଂ ପ୍ରତିଜ୍ଞା କଲା ଏଥର ଦେଖାହେଲେ ସେ ବିଲୁଆକୁ ଛାଡ଼ିବନି, ପ୍ରାଣରେ ମାରିଦେବ ।

ତା'ପରେ ବହୁତ ଦିନ ବିତିଗଲା । ଚିତାବାଘ ବିଲୁଆକୁ ଏଣେତେଣେ ଖୋଜୁଥାଏ । ଦିନେ ଦେଖିଲା ବିଲୁଆ ତା' ପଛଗୋଡ଼ ଦି'ଟାକୁ ମୋଡ଼ିମାଡ଼ି ବସିଛି । ଆଗ ଗୋଡ଼ରେ ଗୋଟିଏ ବାଜା ବଜେଇବା କାଠି ଧରିଛି । କ'ଣ ସବୁ ମନ୍ତ୍ର ପଢ଼ୁଛି ଓ କାଠିକୁ ଭୂଇଁରେ ବାଡ଼ଉଛି । ବାଘର ତ ରାଗ ଥିଲା । ସେ ବିଲୁଆ ଉପରକୁ କୁଦାମାରି ତାକୁ ଜାବୁଡ଼ି ଧରିଲା । ନିଜ ଲାଙ୍ଗୁଡ଼କୁ ଦେଖାଇ କହିଲା, "ଠକ ! ଦେଖ୍ ତୁ ମୋର କି କ୍ଷତି କରିଛୁ । ଆଜି ମୁଁ ତତେ ନିଶ୍ଚୟ ଖାଇବି ।" ବିଲୁଆ ଯେମିତି କିଛି ଜାଣିନି । ସେମିତି ଅଭିନୟ କଲା । ବାଘକୁ ପଚାରିଲା, "ତମେ କ'ଣ ସବୁ କହୁଛ ମୁଁ ବୁଝି ପାରୁନି । ହଁ ମୁଁ ଜାଣିପାରୁଛି, ମୋତେ ପ୍ରାଣରେ ମାରିଦେଇ ପାରିବ । ତା' ଆଗରୁ କୁହ

ତୁମର କ'ଣ ହେଇଛି ।'' ବାଘ ତା' ଜୀବନରେ ଘଟିଥିବା ସବୁତକ ଅଘଟଣ କହିଗଲା । ବାଘର ଦୁଃଖ ଶୁଣିସାରି ବିଲୁଆ ଜିଭ କାମୁଡ଼ିଲା, ଦୁଃଖ ପ୍ରକାଶ କଲା । କହିଲା, ''ମୁଁ ହେଲେ ଭଲା ତୁମକୁ ଆଗରୁ ଭେଟିଥାନ୍ତି ! ତା'ହେଲେ ତମକୁ ସତର୍କ କରି ଦେଇଥା'ନ୍ତି । ସେହି ହ୍ରଦକୂଳରେ ରହୁଥିବା ବିଲୁଆମାନେ ମୋ' ମାମୁଁପୁଅ ଭାଇ । ସମସ୍ତେ ତାଙ୍କୁ ଠକ ବୋଲି ଜାଣନ୍ତି । ମୁଁ ସେମାନଙ୍କ ପାଇଁ ଲଜ୍ଜିତ । ମୁଁ ତମ ଦୁଃଖରେ କେତେ ଦୁଃଖୀ ତାହା କହିବାକୁ ମୋ ପାଖରେ ଭାଷା ନାହିଁ ।''

ବୋକା ଚିତାବାଘ ବିଲୁଆର ମିଠା କଥାରେ ଭଳିଗଲା ଏବଂ 'ତମେ କ'ଣ କରୁଛ, ବୋଲି ବିଲୁଆକୁ ପଚାରିଲା । ବିଲୁଆ ଠିକ୍ ଏଭଳି ସମୟକୁ ଅପେକ୍ଷା କରୁଥିଲା । ସିଏ ତା'ର ବାଜା ବଜେଇବା କାଠି ତଳେ ଥୋଇ ଦେଇ ବାଘକୁ କହିଲା, ''ମୁଁ ବାଜା ବଜେଇବା ବିଲୁଆ । ମୁଁ ବାଜା ବଜେଇ କରି ବଞ୍ଚେ । ମୁଁ ଭୂଇଁକୁ ଏହି କାଠିରେ ପିଟେ ଆଉ ମନ୍ତ୍ର ପାଠ କରେ । ମୋ ମନ୍ତ୍ରର ପ୍ରଭାବରେ ଭୂଇଁରୁ ମହୁ ଝରେ । ମୁଁ ମହୁ ଛଡ଼ା ଆଉ କିଛି ଖାଏନି । ଏଣୁ ଏଇ ଜାଗା ଛାଡ଼ି ଆଉ କୁଆଡ଼େ ଯାଏ ନାହିଁ ।'' ବିଲୁଆ କଥାରେ ଚିତାବାଘ ଭଳିଯାଇ ବିଲୁଆକୁ ପଚାରିଲା, ''ମହୁ ପାଇବା ପାଇଁ ମୁଁ କ'ଣ ବାଜା ବଜେଇବାକୁ ଚେଷ୍ଟା କରିବି ?'' ବିଲୁଆ କହିଲା, ''ରୁହ ମୁଁ ତମ ପାଇଁ ଠିକଣା ଜାଗାଟିଏ ବାଛିନିଏ ଯେଉଁଠି ମହୁ ଭରପୂର ଥିବ ।'' ସିଏ ଭୂଇଁ ଉପରେ କାନପାରି ମହୁମାଛିଙ୍କ ଗୁଣୁଗୁଣୁ ଶବ୍ଦ ବାରିବାକୁ ଚେଷ୍ଟାକଲା । ଜାଣିବାକୁ ପାଇଲା ଗୋଟିଏ ଜାଗାରେ ଭୂଇଁତଳେ ଫାଙ୍କ ଭିତରେ ମହୁଫେଣାଟିଏ ଅଛି । ବିଲୁଆ ଚିତାବାଘକୁ ଯାହା ତାହା ଶବ୍ଦଗୁଡ଼ିଏ ଶିଖେଇ ଦେଇ କହିଲା, ''ଏ ମନ୍ତ୍ର ପଢ଼ ଆଉ ଏଇଠି ଭୂଇଁକୁ ଜୋର ଜୋର ପିଟ ।'' ବାଘ ଯେମିତି ପିଟିବା ଆରମ୍ଭ କରିଛି, ମହୁମାଛିମାନେ କାଉଳିଆ ହେଇଯାଇ ଭୂଇଁ ଫାଟ ମଧ୍ୟରୁ ପଦାକୁ ବାହାରିଲେ ଏବଂ ଚିତାବାଘକୁ ବିନ୍ଧି ଗଲେ । ଏହାରି ଭିତରେ ବିଲୁଆ ଖସି ପଳେଇଲା । ମହୁମାଛିମାନେ ବାଘର ଦେହ,



ମୁଣ୍ଡ, କାନମୂଳ, ପେଟ, ପିଠିକୁ  ବିନ୍ଧି ଫଳେଇ ପକେଇଲେ । ବାଘ ଯନ୍ତ୍ରଣାରେ ଛଟପଟ ହେଲା । ମହୁମାଛି ଏତେ ରାଗି ଯାଇଥିଲେ ଯେ ବାଘ ଆକ୍ତାମାକ୍ତା ନ ହେବାଯାଏଁ ତାକୁ ଛାଡ଼ିଲେ ନାହିଁ ।

ଚିତାବାଘର ଦେହସାରା ଫଳିଗଲା । ସିଏ ଏଥରକ ମନେ ମନେ ସ୍ଥିର କଲା ଆଉ ବିଲୁଆକୁ ପାନେ ନଦେଇ ଛାଡ଼ିବ ନାହିଁ । ସିଏ ଜଙ୍ଗଲ ସାରା ବିଲୁଆକୁ ଖୋଜି ବୁଲିଲା । ଦିନେ ହଠାତ୍ ବିଲୁଆକୁ ଭେଟିଲା । ବିଲୁଆ ବାଉଁଶ ପାତିରେ ବୁଣା ଲମ୍ବା ପୁଡୁଗଟିଏ ମଧ୍ୟରେ ବସିଛି । ପୁଡୁଗଟି ଗୋଟିଏ ଉଚ୍ଚା ପାହାଡ଼ ଉପରେ ଅଛି ଆଉ ମଝିରେ ମଝିରେ ପୁଡୁଗଟିକୁ ଗଡ଼େଇ

ଦେଇ ସେ ମହା ଆନନ୍ଦରେ ଗୀତ ଗାଉଛି । ବାଘ ତ ବିଲୁଆ ଉପରେ ଅସମ୍ଭବ ଭାବେ ରାଗିଥିଲା । ସେ ବିଲୁଆ ଉପରକୁ କୁଦାମାରି ତାକୁ କାବୁ କରିନେଲା ଆଉ କହିଲା, ''ତୁ ମୋତେ ତିନିଥର ହଇରାଣ କଲୁଣି, ଏଥରକ ମୁଁ ତୋତେ ଆଉ ଛାଡ଼ିବିନି ।''

ବିଲୁଆ ଖୁବ୍ ଚାଲାକି କରି ବାଘକୁ କହିଲା, ''ତମେ ଆଉ ମୁଁ ଏକାଭଳିଆ ଦଶା ଭୋଗୁଛେ । ମୁଁ ମୋ ପରିବାର ଦ୍ୱାରା ଏଭଳି କଷ୍ଟ ଭୋଗିଲି ଯେ ସେମାନଙ୍କ ସହିତ ରହି ନପାରି ଏଇଠି ସମୟ ବିତଉଛି ଆଉ ଏହି ପୁଡ଼ୁଗ ଭିତରେ ରହି ସମଗ୍ର ପୃଥିବୀକୁ ଦେଖିପାରୁଛି । ଏହି ବାଉଁଶ ପାତରେ ବୁଣା ହୋଇଥିବା ପୁଡ଼ୁଗଟି ମୋତେ ଆରାମ ଦେଉଛି । ଏହାରି ଭିତରେ ବସିଲେ ମୋତେ ଭୋକ କି ଶୋଷ ଲାଗୁନି ।''

ଚିତାବାଘ ଏତେ ବୋକା ଯେ ସେ ଜୀବନରେ କିଛି ଶିଖି ପାରିଲାନି । ବିଲୁଆର ମିଠାକଥା ଶୁଣି ତା'ର ସବୁ ଠକାମି ଭୁଲିଗଲା । ଆଉ ସେ ପୁଡ଼ୁଗ ଭିତରକୁ ପଶିବାକୁ ଇଚ୍ଛା କଲା । ପ୍ରଥମେ ପ୍ରଥମେ ବିଲୁଆ ବାଘର ଅନୁରୋଧ ମାନିବାପାଇଁ ରାଜି ହେଲାନି । ବାଘ ବହୁତ ଅନୁନୟ ବିନୟ ହେଇ କହିଲା ପରେ ସେ ହଁ ଭରିଲା ।

ବିଲୁଆ ତଥାପି ବାଘକୁ କହୁଥାଏ, ''ଦେଖ ତମେ ଟିକିଏ ସମୟ ପାଇଁ ହିଁ ପୁଡ଼ୁଗ ଭିତରେ ରହିବ । କାରଣ ଏ ଆନନ୍ଦ, ଏ ଶାନ୍ତି ଛାଡ଼ି ବାହାରକୁ ବାହାରି ଯିବା ପାଇଁ ମୋର ଇଚ୍ଛା ନାହିଁ ।'' ବାଘ ଏଭଳି ଭାବରେ ପୁଡ଼ୁଗ ପ୍ରତି ଶ୍ରଦ୍ଧା କରିସାରିଥିଲା ଯେ ବିଲୁଆ ବାହାରି ପଡ଼ିବା ମାତ୍ରେ ସେ ତା' ଭିତରକୁ ପଶିଗଲା । ଏବେ ବିଲୁଆ ପୁଡ଼ୁଗଟିକୁ ପାହାଡ଼ ତଳକୁ ଗଡ଼େଇ ଦେଲା । ପାହାଡ଼ ଏତେ ଉଚ୍ଚା ଓ ଗଡ଼ାଣିଆ ଥିଲା ଯେ ବାଘ ପୁଡ଼ୁଗ ସହିତ ତଳକୁ ଗଡ଼ି ଗଡ଼ି ଯାଇ ଘାଏଲା ହେଇ ମରିଗଲା ।



# ଖାଦ୍ୟ ପରଷା ଯାଦୁବାଡ଼ି

ନଈକୂଳିଆ ଗାଁଟିଏ । ଗାଁରେ ଗୋଟିଏ ବାପା ମା' ଛେଉଣ୍ଡ ପିଲା ଏକାକୀ ରହୁଥାଏ । ସିଏ ଭାରି ଗରିବ । ତା' ନାଁ ସୁମନ । ନଦୀ ଉପତ୍ୟକାରେ ହଳଦୀ ରଙ୍ଗର ବାର୍ଲି ଭର୍ତ୍ତି କ୍ଷେତ । ମନେ ହେଉଥାଏ ଏବେ ହିଁ ଫସଲ ଅମଳ ହେବ । ପାହାଡ଼ର ଢାଲୁ ଅଂଶତକ ଚାଷ ହେବ, ଗହମ ଚାଷ । ଗାଁର ସମସ୍ତେ ଗହମ ଚାଷରେ ଲାଗିପଡ଼ିବେ । କିନ୍ତୁ ଗାଁର ଗରିବ ପିଲା ସୁମନ ପାଖରେ ବିହନ ନାହିଁ । ସିଏ ତ ଶସ୍ୟ ଅଭାବରୁ ସବୁ ବିହନକୁ ବି ଖାଇ ଦେଇଛି । ପାଖ ପଡ଼ିଶା ଲୋକେ ଦୟା କରି ସୁମନକୁ କିଛି ବିହନ ଦେଲେ । ସିଏ ପାହାଡ଼ ଗଡ଼ାଣିରେ ତା' ଅକ୍ତିଆରରେ ଥିବା ଜମି ଖଣ୍ଡକରେ ଗହମ ଲଗାଇଦେଲା ।

ଗହମ ମଞ୍ଜି ପୋତା ହେଲା ପରେ ଦଳେ ଚଟିଆ କାହୁଁ ଥିଲେ ଉଡ଼ି ଆସି ଗୋଟିଗୋଟି କରି ବିହନ ଖୁଣ୍ଟି ଖାଇଗଲେ । ସୁମନ ହତାଶ ଓ ଆଶ୍ଚର୍ଯ୍ୟ ହେଇ ଚାହିଁ ରହିଥାଏ । ତା'ର ହତାଶା ଶେଷରେ କ୍ରୋଧରେ ପରିଣତ ହେଇଗଲା ଏବଂ ସେ ଘରଚଟିଆଙ୍କ ପିଛା କଲା । ସେ ଦେଖିବାକୁ ପାଇଲା ଗୋଟିଏ କଣ୍ଟାବୁଦା ମଧ୍ୟରେ ଚଟିଆମାନେ ବସାବାନ୍ଧି ରହିଛନ୍ତି ଏବଂ ତା' ଭିତରେ ଛ'ଟି ଛୁଆ ବିକଳ ହୋଇ କିଚିରିମିଚିରି କରୁଛନ୍ତି । ସୁମନ ଏତେ ବେଶି ରାଗିଯାଇ ଥିଲା ଯେ ନିଆଁ ଲଗାଇ ସେମାନଙ୍କୁ ପୋଡ଼ିଜାଳି ମାରିଦେବା ପାଇଁ ଚାହିଁଲା । ଚଟିଆମାନେ ସେମାନଙ୍କ ଜୀବନ ରକ୍ଷା କରିବାପାଇଁ ସୁମନ ପାଖରେ କାକୁତି ମିନତି ହେଲେ । ସୁମନ କହିଲା, 'ତମେ ତ ମୋର ସବୁ ଫସଲ ଖାଇଗଲ, ମୁଁ ଏବେ ଖାଇବି କ'ଣ ? ତମେମାନେ ମୋ' ଦାନାପାଣି ସାରିଦେଇଛ, ମୁଁ ତୁମକୁ କ୍ଷମା ଦେଇପାରିବି ନାହିଁ ।' ବୁଢ଼ା ଚଟିଆ ଏବେ ପାଟି ଖୋଲିଲା, 'ପୁଅରେ ଏ ବାଡ଼ିଟି ନେ, ପାଖରେ ରଖିଥିବୁ । ତୁ ଯାହା ଚାହିଁବୁ ଏ ବାଡ଼ି ତୋତେ ଦେବ । ତୁ ଆଉ କ୍ଷେତ ବାଡ଼ିରେ କାମ କରିବା ଦରକାର ହେବ ନାହିଁ ।' ସୁମନ ବାଡ଼ିଟି ନେଇ ଆନନ୍ଦରେ ଘରକୁ ଫେରିଲା ।

ସତକୁ ସତ ବାଡ଼ିଟି ସୁମନର ଖାଇବା ପାଇଁ ବଢ଼ିଆ ବଢ଼ିଆ ଖାଦ୍ୟ ତିଆରି ଦେଲା । ସୁମନ ବାଡ଼ିଟିକୁ ଯେତେବେଳେ ଯାହା ମାଗିଲା ସେ ତାହା ଦେଲା । ଏଣୁ ଭିକ୍ଷା ଥାଳି ଧରି ସୁମନକୁ ସାହି ସାହି ବୁଲିବାକୁ ପଡ଼ିଲାନି । ଗାଁ ଲୋକେ ସନ୍ଦେହ କଲେ । ଥରେ ପଡ଼ିଶା ଘର ବୁଢ଼ୀ ମାଉସୀ ସୁମନ କିମିତି ଖାଉଛି, କିମିତି ଚଳୁଛି ଦେଖିବାକୁ ତା' ଘରକୁ ଗଲା । ମାଉସୀ ଆଶ୍ଚର୍ଯ୍ୟ ହେଇ ଲକ୍ଷ୍ୟ କଲା, ପିଲାଟି ତା' ଝୁଲାମୁଣିରୁ ବାଡ଼ିଟି କାଢ଼ି ଆଗରେ ଥୋଇଲା । ବାଡ଼ିକୁ ଆଦେଶ ଦେଲା, 'ଆଜି ମୋ ପାଇଁ ଭାତ ମାଂସ ଆଣି ଦେ । ମୁଁ ସିଙ୍ଗ୍‌ଚାଙ୍ଗ୍ ମଧ୍ୟ ପିଇବାକୁ ଚାହୁଁଛି । ମୋତେ ଦେ ।' ପିଲାଟି ପାଟିରୁ କଥା ସରିନି,

ଗରମ ଗରମ ବାମ୍ଫ ବାହାରୁଥିବା ଭାତ, ଘୁଷୁରୀ ମାଂସର ତରକାରୀ, ଶାଗୁଆ-ନାଲି ଲଙ୍କା ଓ ମୂଳା ଥାଳିରେ ଭର୍ତ୍ତି ହୋଇ ପିଲାଟି ଆଗରେ ଥୁଆ ହେଇଗଲା । ସୁମନ ମହା ଆନନ୍ଦରେ ସେତକ ଖାଇଲା ଆଉ ସିଙ୍ଗ୍‌ଚାଙ୍ଗ୍ କପ୍‌ରେ ଢାଳି ପିଇଲା ।

ଏସବୁ ଦେଖି ବୁଢ଼ୀମାଉସୀର ଆଖି ଖୋସି ହୋଇଗଲା । ସୁମନର ଯାଦୁ ବାଡ଼ିଟିକୁ କଳେବଳେ କୌଶଳେ କିପରି ହାତେଇବ ଭାବିଲା । ମାଉସୀ ବୁଦ୍ଧିଟିଏ ପାଞ୍ଚି କୌଣସି ଗୋଟିଏ ଜରୁରୀ କାମରେ ସୁମନକୁ ନିଜର ପୁଅ ସାଙ୍ଗରେ ବହୁ ଦୂର ଗାଁକୁ ପଠେଇ ଦେଇ କହିଲା, 'କାଳେ ରାସ୍ତାରେ ବାଡ଼ିଟି ହଜିଯିବ, ବାଡ଼ିଟି ନ ନେଇ ମୋ ପାଖରେ ରଖିଦେ ।'

କିଛିଦିନ ପରେ ସୁମନ ଆଉ ତା' ସାଙ୍ଗ ଘରକୁ ଫେରିଲେ । ମାଉସୀ ସୁମନର ବାଡ଼ିଟି ତାକୁ ଫେରାଇ ଦେଲା । କିନ୍ତୁ ସେ ଅସଲ ଯାଦୁକରା ବାଡ଼ିଟି ରଖି ତାକୁ ଠକିବାପାଇଁ ସାଦା ବାଡ଼ିଟିଏ ଦେଇଦେଲା । ସୁମନ ବାଡ଼ିଟିକୁ ଖାଇବାକୁ ମାଗିଲା । ସତ ବାଡ଼ି ହୋଇଛି ଯେ ତାକୁ ଖାଦ୍ୟ ପରଷି ଦେବ ! ଥରେ ନୁହେଁ ଦଶଥର ମାଗିଲା । ବାଡ଼ି ଚୁପ୍ । ସୁମନ ରାଗିଯାଇ ବୁଢ଼ା ଚଟିଆ ପାଖରେ ପହଞ୍ଚିଲା ଆଉ ସେ କାହିଁକି ଠକେଇ ଗଲା ବୋଲି ପଚାରିଲା । ବୁଢ଼ା ଚଟିଆ ଏଥର ତାକୁ ଗୋଟିଏ ଛୋଟିଆ ଛେଳିର ଚମଡ଼ାଟିଏ ଦେଇ କହିଲା, 'ଏଇଟିକୁ ନେ, ତାକୁ ଭଲକରି ଧୋଇଦେବୁ ଆଉ ଆଉଁଷି ଦେଲେ ସେ ତୋତେ ପ୍ରଚୁର ଅର୍ଥ ଦେବ । ସେହି ପଇସାରେ ଅନେକ ଦିନ ପାଇଁ ଖାଦ୍ୟ କିଣି ଖାଇବୁ ।

ସୁମନ ଆନନ୍ଦରେ ଘରକୁ ଫେରି ଚମଡ଼ାଟିକୁ ଧୋଇଲା । ସେ ଆଉଁଷି ଦେବା ମାତ୍ରେ ତା' ଆଗରେ ଧନରତ୍ନ ଅଜାଡ଼ି ହେଇଗଲା । ସିଏ ପୁଣି ମହା ସୁଖରେ ରହିଲା । ପଡ଼ିଶାଘର ମାଉସୀକୁ ସୁମନର ସୁଖ ଦେହରେ ଗଲାନି । ସେ ଠକାମି କରି ଅସଲ ଚମଡ଼ାଟିକୁ ବଦଳେଇ ତା' ଜାଗାରେ ଅନ୍ୟ ଗୋଟିଏ ଚମଡ଼ା ଥୋଇଦେଲା । ଏଥର ସୁମନ

ଚମଡ଼ାଟିକୁ ଯେତେ ଧୋଇଲେ, ଯେତେ ଆଉଁଷିଲେ ମଧ୍ୟ କିଛି ଫଳ ହେଲା ନାହିଁ । ସୁମନ ପୁଣି ବୁଢ଼ାଚଟିଆ ପାଖକୁ ଅସହାୟ ହୋଇ ଧାଇଁଲା । ବୁଢ଼ା ଚଟିଆ ବିରକ୍ତ ପ୍ରକାଶ କରି କହିଲା, 'ମୁଁ ଦେଉଥିବା ମୂଲ୍ୟବାନ ଜିନିଷର ତୁ ଯତ୍ନ କରୁନୁ, ଗୋଟିକ ପରେ ଗୋଟିଏ ହଜେଇ ଦେଉଛୁ । ଆଉ ତୋତେ କେତେ ଦରବ ଦେଇପାରିବି ? ନେ' ମୋ ପାଖରେ ଏଇ ଦଣ୍ଡ ଖଣ୍ଡିଏ ଅଛି । ମୋ ପାଖକୁ ତୁ ଆଉ ଆସିବୁନି । ତୋର ଯେତିକି ଗହମ ଦାନା ଆମ ଚଟିଆମାନେ ଖାଇଥିଲେ, ସେ ବାବଦକୁ ଋଣ ପରିଶୋଧ ହୋଇଗଲା ।'

ସୁମନ ମନ ଶୁଖାଇଲା । ଚଟିଆକୁ ପଚାରିଲା, 'ଏହି ସାଧାରଣ ଦଣ୍ଡ ଖଣ୍ଡେ ନେଇ ମୁଁ କରିବି କ'ଣ ? ଚଟିଆ ସୁମନକୁ ଭରସା ଦେଇ ଦଣ୍ଡଟିର କରାମତି ବୁଝେଇ ଦେଲା । 'ନେ, ଦଣ୍ଡଟିକୁ ଘର ମଝିଆ ଉପରେ ଓଲଟା ବାଗରେ ରଖିବୁ । ତା' ଆଗରେ ଭୂଇଁରେ ମୁଣ୍ଡ ଲଗାଇ ତିନିଥର ଜୁହାର ହେବୁ । ତୁ ଯାହାକୁ ଚାହିଁବୁ ସେ ଦଣ୍ଡ ତାକୁ ନିର୍ଦ୍ଧୁମ ପିଟିବ ।'

ସୁମନ ଦଣ୍ଡଟି ନେଇ ଘରକୁ ଫେରିଲା । ପଡ଼ିଶା ଘର ମାଉସୀ ସୁମନ ଘରକୁ ଆସି ଦଣ୍ଡଟି କି କାମରେ ଲାଗିବ ବୋଲି ସୁମନଠାରୁ ଜାଣିବାକୁ ଚାହିଁଲା । ସୁମନ ଜାଣିଛି ଯେ ପଡ଼ିଶା ଘର ମାଉସୀ ହିଁ ତାର ଯାଦୁବାଡ଼ି ଆଉ ଚମଡ଼ା ଚୋରାଇ ନେଇଛି । ଏଣୁ ସେ କହିଲା, 'ମାଉସୀ ଟିକିଏ ଅପେକ୍ଷା କରିଯାଅ, ଦଣ୍ଡର କରାମତି ଦେଖିବ ।' ମାଉସୀ ନିଜର କୌତୂହଳକୁ ସମ୍ଭାଳି ନପାରି କ'ଣ ଘଟିବ ଦେଖିବାକୁ ଅପେକ୍ଷା କରି ରହିଲା । ସୁମନ ଦଣ୍ଡ ଆଗରେ ମୁଣ୍ଡିଆ ମାରିଲା । ତା'ପରେ ଦଣ୍ଡକୁ ଚୁପ୍‌ଚୁପ୍ କହିଲା, 'ତୁ ଏଇ ବୁଢ଼ୀ ମାଉସୀ କଥା ବୁଝ୍ ।' ମାଉସୀ କିଛି ବୁଝିବା ପୂର୍ବରୁ 'ଦଣ୍ଡ' ମାଉସୀ ପାଖକୁ ଆସି ତାକୁ ନିର୍ଘାତ ପିଟିବାକୁ ଆରମ୍ଭ କଲା । ମାଉସୀ ପ୍ରାଣ ବିକଳରେ ଦୌଡ଼ିବା ଆରମ୍ଭ କଲା । ଦଣ୍ଡ ଆଉ ମାଉସୀକୁ ନଛାଡ଼େ । ସିଏ ଗୋଡ଼ାଇ ଗୋଡ଼ାଇ ପିଟିଲା । ମାଉସୀ

ଆଉ ଯାଏ କୁଆଡ଼େ । ରଡ଼ିକରି କହିଲା, 'ମରିଗଲି, ମରିଗଲି, ସୁମନରେ ତୋର ଯାଦୁବାଡ଼ି ଓ ଚମଡ଼ା ମୁଁ ନେଇଛି । ଫେରାଇ ଦେବି । ମୋତେ ଆଉ ମାରନା ।'

ସୁମନ ଦଣ୍ଡକୁ କହିଲା, 'ତା ହେଲେ ଏତିକିରେ ପିଟା ବାଡ଼ିଆ ବନ୍ଦ ରହୁ ।'

ମାଉସୀ ନିଜ ଘରକୁ ଧାଇଁଯାଇ ସେ ଚୋରି କରି ନେଇଥିବା ଯାଦୁ ବାଡ଼ି ଆଉ ଚମଡ଼ା ଆଣି ସୁମନକୁ ଫେରାଇ ଦେଲା । ଅନୁନୟ ହେଇ କହିଲା, 'ବାପ ସୁମନ ! ମୋ ପଛରେ ତୁ ଆଉ ଦଣ୍ଡକୁ କାମରେ ଲଗାନା । ସୁମନ ଏବେ ତାର ତିନୋଟିଯାକ ଦରବ- ଯାଦୁବାଡ଼ି, ଚମଡ଼ା ଓ ଦଣ୍ଡ ଫେରି ପାଇଲା । ସେ ମହା ଆନନ୍ଦରେ ସେହି ନଈକୂଳିଆ ଗାଁରେ ରହିଲା । ତାକୁ ଆଉ କ୍ଷେତବାଡ଼ିକୁ ଯାଇ କାମ କରିବାକୁ ପଡ଼ିଲାନି ।



# ମେଖି ଡୋମା

ମେଖି ଡୋମା ଗୋଟିଏ ଛୋଟିଆ ଝିଅ । କିନ୍ତୁ ଖୁବ୍ ସାହସୀ । ତା' ବାପା-ମା' ବୁଢ଼ାବୁଢ଼ୀ ହୋଇଗଲା ପରେ ଆଉ କ୍ଷେତବାଡ଼ିରେ ପରିଶ୍ରମ କରିବାକୁ ବଳ ପାଇଲେନି । ପାହାଡ଼ ଉପରେ ଥିବା ବୁଦ୍ଧମନ୍ଦିରକୁ ଚାଲିଗଲେ । ସେଠାରେ ରହି ଧ୍ୟାନ ଧାରଣା, ଜପତପ କଲେ । ମନ୍ଦିରଟି ମେଖି ଡୋମାର ଗାଁଠାରୁ ବହୁ ଦୂରରେ, ପାହାଡ଼ ଉପର ନିକାଞ୍ଚନ ଜଙ୍ଗଲ ଭିତରେ ଅବସ୍ଥିତ । ତୀଖ ପାହାଡ଼ ଚଢ଼ି ବଡ଼କଠିନ ରାସ୍ତାଦେଇ ଯିବାପାଇଁ ମନ୍ଦିରକୁ ପଡ଼େ । ଏତେ ବାଧା ଆଉ ଅସୁବିଧାକୁ ଦେହସହା କରି ପ୍ରତି ମାସରେ ମାସଯାକର

ଖାଦ୍ୟପଦାର୍ଥ ଲମ୍ବାବାଉଁଶ ପାଛିଆରେ ଭର୍ତ୍ତିକରି ପିଠି ଉପରେ ଲଦି ମେଖି ଡୋମା ପାହାଡ଼ ଚଢ଼ି ତାର ବାପା ମା' ରହୁଥିବା ମନ୍ଦିର ପାଖକୁ ଯାଏ । ସିଏ ମନେମନେ ଭାବେ ଯେ ପିତୃ ଓ ମାତୃ ଋଣ ଶୁଝିବାର ଏହା ଏକମାତ୍ର ଉପାୟ । ବୁଦ୍ଧମନ୍ଦିରକୁ ଯିବା ରାସ୍ତାରେ ଜଙ୍ଗଲୀ ଜନ୍ତୁଙ୍କ ଭୟ । ଏହି ଜନ୍ତୁମାନେ ମାସ ମାସ ଧରି ମେଖି ଡୋମା ପାହାଡ଼ ଚଢ଼ିବା ଏବଂ ଓହ୍ଲେଇବା ଦେଖିଛନ୍ତି । ଦିନେ ସେମାନେ ତାକୁ ଭେଟିବାପାଇଁ ରାସ୍ତାରେ ଛକିଲେ ।

ମେଖି ଡୋମା ପିଠିରେ ବାଉଁଶ ପାଛିଆ ଲଦି ପାହାଡ଼ ଉପରକୁ ଉଠୁଛି । ରାସ୍ତା କଡ଼ରେ ଗୋଟିଏ ଦନ୍ତାବାର୍‌ହା ସଙ୍ଗେ ଦେଖାହେଲା । ବାର୍‌ହା ହେଣ୍ଟାଳ କରି ଡୋମାକୁ ଧମକେଇ କହିଲା, 'ମୁଁ ତତେ ଆଜି ଖାଇବି ।'

ଡୋମା ଆଖି ଛଳଛଳ କରି ବାର୍‌ହାକୁ ବୁଝେଇଲା, 'ଦେଖ୍, ତୁ ଖାଇବୁ ଯେ, ଏବେ ନୁହେଁ । ଦେଖୁନୁ ମୁଁ କେମିତି ଦୁର୍ବଳ ଦେଖାଯାଉଛି । ଦେହରେ ମାଂସ ପୁଳାଏ ନାହିଁ । ଚମ ହାଡ଼ ଉପରେ ଢାଙ୍କି ହେଇ ରହିଛି । ମୁଁ ମୋ ବାପା-ମା' ପାଖରେ କିଛିଦିନ ରହି ଫେରେ । ଦେହରେ ମାଂସ ଲାଗିଥିବ, ଖାଇବୁ ଯେ ତୋ' ପେଟ ପୂରିଯିବ ।'

ବାର୍‌ହା ଡୋମା କଥାରେ ବିଶ୍ୱାସ କରି ତାକୁ ଛାଡ଼ିଦେଲା । କହିଲା, 'ଫେରିଲା ବେଳେ ଦେଖାହେବ ।' ଡୋମା କିଛି ବାଟ ପାହାଡ଼ ଉପରକୁ ଚଢ଼ିଚି କି ନାହିଁ ଗୋଟିଏ ମସ୍ତବଡ଼ ମାଙ୍କଡ଼କୁ ଭେଟିଲା । ମାଙ୍କଡ଼ ତା' ଦାନ୍ତ କଡ଼ମଡ଼ କରି କର୍କଶ ସ୍ୱରରେ ପାଟି କରି କହିଲା, 'ମୁଁ ତୋତେ ଆଜି ଖାଇବି ।'

ଡୋମା ଆଖି ଛଳଛଳ କରି କହିଲା, 'ଦେଖ୍, ତୁ ଖାଇବୁ ଯେ ଏବେ ନୁହେଁ । ଦେଖୁନୁ ମୁଁ କେମିତି ଦୁର୍ବଳ ଦେଖାଯାଉଛି । ଦେହରେ ମାଂସ ପୁଳାଏ ନାହିଁ । ଚମ ହାଡ଼ ଉପରେ ଢାଙ୍କି ହେଇ ରହିଛି । ମୁଁ ମୋ ବାପା-

ମା'ଙ୍କ ପାଖରେ କିଛିଦିନ ରହି ଫେରେ । ଦେହରେ ମାଂସ ଲାଗି ଯାଇଥିବ, ଖାଇବୁ ଯେ ତୋ' ପେଟ ପୂରିବ ।'

ଖୁବ୍ ଶୀଘ୍ର ମାଙ୍କଡ଼ ଡୋମା କଥାରେ ବିଶ୍ୱାସ କରି ତାକୁ ଛାଡ଼ିଦେଲା । ଡୋମା ଏବେ ଶୀଘ୍ର ଶୀଘ୍ର ପାହାଡ଼ ଉପରକୁ ଉଠିଲା । ଭାବିଲା ଆଉ କୌଣସି ଜନ୍ତୁ ଦେଖା ନହେଉ । ମୁଁ ମୋ' ବାପା-ମା'ଙ୍କ ପାଖରେ ପହଞ୍ଚିଯାଏ । ସେ ସେମିତି ଭାବୁଛି, ଚିତାବାଘଟିଏ ଗର୍ଜନ କରି ତା' ବାଟ ଓଗାଳିଲା । କହିଲା, 'ହେ ଝିଅ କୁଆଡ଼େ ଯାଉଛୁ, ମୁଁ ତତେ ଆଜି ଖାଇବି ।'

ଡୋମା ଆଖି ଛଳଛଳ କରି ସେଇ ପୁରୁଣା କଥାକୁ ଦୋହରାଇଲା । ଚିତାବାଘ ଡୋମାକୁ ରାସ୍ତା ଛାଡ଼ି ଦେଇ କହିଲା, 'ମୁଁ ତୋ' ଫେରିବା ବାଟକୁ ଅନେଇ ରହିଥିବି ।'

ଡୋମା ଶୀଘ୍ରଶୀଘ୍ର ପାହାଡ଼ ଉପରକୁ ଉଠିଲା, ବୁଦ୍ଧମନ୍ଦିରରେ ଥିବା ବାପା-ମା'ଙ୍କ ପାଖରେ ପହଞ୍ଚିଲା । ସେ ନେଇଥିବା ଖାଦ୍ୟର ଲମ୍ବା ବାଉଁଶପାଛିଆ ଖୋଲିଦେଇ ମନ୍ଦିର ଭିତରେ ରଖିଦେଲା । ଡୋମାର ମା' ଲକ୍ଷ୍ୟ କଲେ ଝିଅର ମନ ଭଲ ନାହିଁ । ସେ ଭାରି ବିରସ ଦେଖାଯାଉଛି । ମା' ଡୋମାକୁ ପାଖରେ ବସାଇ ମୁଣ୍ଡ ଆଉଁସି ପଚାରିଲେ, 'ଝିଅ ତୋର କ'ଣ ହେଇଛି ? ମନଦୁଃଖ ହେଲା ଭଳି ଲାଗୁଛି । ମୋତେ ଘଟଣାଟି ଖୋଲି କରି କହ । ମୁଁ ତତେ ସାହାଯ୍ୟ କରିବି ।'

ଡୋମା କହିଲା, 'ତମ ସାଙ୍ଗରେ ଏହା ମୋର ଶେଷ ଦେଖା । ରାସ୍ତାରେ ତିନିଟି ହିଂସ୍ର ଜନ୍ତୁ ମୋ' ଫେରିବା ବାଟକୁ ଜଗିଛନ୍ତି । ଫେରିଲେ ସେମାନେ ମୋତେ ଖାଇବେ ।'

ଡୋମାର ମା' ଭାରି ବୁଦ୍ଧିଆ ସ୍ତ୍ରୀଲୋକ । ସିଏ କହିଲେ, 'ଝିଅ, ଏଇ କଥାନେଇ ଜମାରୁ ବ୍ୟସ୍ତ ହେବୁନି । ମୁଁ ତା'ର ପ୍ରତିକାର କରୁଛି ।' ସିଏ ବଣ ଜଙ୍ଗଲରୁ ଲାଖ ସଂଗ୍ରହ କଲେ ଏବଂ ଲାଖର ଗୋଟିଏ ବିରାଟ ପିପା

ପ୍ରସ୍ତୁତ କଲେ । ପିପା ପ୍ରସ୍ତୁତ ସରିଲା, ଝିଅକୁ ତା' ଭିତରେ ପଶିବାକୁ କହିଲେ । ତା' ପରେ ଘୋଡ଼ଣିଟି ବନ୍ଦ କରି ପାହାଡ଼ ତଳକୁ ଗଡ଼େଇଦେଲେ ।

ବାଟରେ ଡୋମା ଫେରିବ ବୋଲି ବାଘ ଜଗି ବସିଛି । ପିପା ଗଡ଼ିଗଡ଼ି ଯାଉଥିବା ଦେଖି ବାଘ ପଚାରିଲା, 'ତମେ ମେଖି ଡୋମାକୁ ଦେଖିଚ ?'

ପିପା ଭିତରୁ ଡୋମା ଉତ୍ତର ଦେଲା, 'ମୁଁ ଦେଖିନିରେ ବାଘ, ମୁଁ ଦେଖିନି, ମୁଁ ପିପାଟିଏ ମାତ୍ର । ମୋତେ ଗଡ଼ିଗଡ଼ି ଯିବାକୁ ଦିଅ ।'

ଡୋମା ଫେରିବ ବୋଲି ମାଙ୍କଡ଼ ଓ ବାର୍ହା ଜଗି ବସିଛନ୍ତି । ସେମାନଙ୍କ ସାମ୍ନା ଦେଇ ପିପା ଗଡ଼ିଗଡ଼ି ଗଲା । ସେ ଦିହେଁ ପଚାରିଲେ, 'ତମେ ମେଖି ଡୋମାକୁ ଦେଖିଚ ?'

ପିପା ଭିତରୁ ଡୋମା ଉତ୍ତର ଦେଲା, 'ମୁଁ ଦେଖିନି, ମୁଁ ଦେଖିନି, ମୁଁ ପିପାଟିଏ ମାତ୍ର । ମୋତେ ଗଡ଼ିଗଡ଼ି ଯିବାକୁ ଦିଅ ।'

ପିପା ଗଡ଼ିଗଡ଼ି ଯାଉଚି, ଅଘଟଣଟିଏ ଘଟିଲା । ଗୋଟିଏ ପଥରରେ ବାଡେଇ ହେଇ ପିପାଟି ଫାଟିଗଲା ଓ ତା' ଭିତରୁ ମେଖି ଡୋମା ପଦାକୁ ବାହାରି ଆସିଲା । ବାଘ, ମାଙ୍କଡ଼ ଆଉ ବାର୍ହା ତିନିହେଁ ମିଶିଯାଇ ଡୋମାକୁ ଜିଅନ୍ତା ରାନ୍ଧିବାପାଇଁ ଯୋଜନା କଲେ । ବାଘ ଜାଳେଣିକାଠ ସଂଗ୍ରହ ପାଇଁ ଜଙ୍ଗଲ ଭିତରକୁ ଗଲା । ମାଙ୍କଡ଼ ଗଲା ପାଣି ଆଣିବାପାଇଁ । ବାର୍ହା ଡୋମାକୁ ଜଗି ବସିଲା ।

ଡୋମା ଗୋଟିଏ ଛୋଟିଆ ପାହାଡ଼ ଉପରେ ନଜରବନ୍ଦୀ ହେଇ ବସି ବାର୍ହାକୁ ନଜର ରଖିଥାଏ । ବାର୍ହା ଡୋମାକୁ ଜଗିବା ଭୁଲିଯାଇ ଭୂଇଁରୁ ଚେରମୂଳି ତାଡ଼ି ଖାଇବା ଆରମ୍ଭ କରିଦେଲା । ଡୋମା ଜାଣିଲା ଯେ ବାର୍ହା ତା' କଥା ପୂରା ଭୁଲି ଗଲାଣି । ସେ ଭୂଇଁରେ ଚଟାପଟ ଗାତଟିଏ ଖୋଳିଦେଲା ଆଉ ତା'ରି ଭିତରେ ଲୁଚିଗଲା ।

ବାଘ ଜାଳେଣି ବିଡ଼ା ନେଇ ଆଉ ମାଙ୍କଡ଼ ପାଣି ନେଇ ପହଞ୍ଚିଲେ। ବାର୍‌ହାକୁ ପଚାରିଲେ, 'ଡୋମା କାହିଁ ?' ବାର୍‌ହା କହିଲା, 'ଆରେ ସିଏ କୁଆଡ଼େ ଖସି ଯାଇଛି ।' ସେ ଦି'ଜଣ କହିଲେ, 'ତୋର ଭୁଲ୍ ପାଇଁ ସେ ଖସିଗଲା, ତା'ହେଲେ ରହ ଆମେ ତତେ ଖାଇବୁ ।' ଏତକ କହି ସେମାନେ ବାର୍‌ହାକୁ ଧରି ମାରିଦେଲେ ।

ମେଖି ଡୋମା ଭୂଇଁତଳେ ରହି ଏମାନଙ୍କ କଥା ଶୁଣୁଥିଲା। ସିଏ ଯେଉଁଠି ଗାତ କରି ଲୁଚିଥିଲା, ତା'ରି ଉପରେ ଏମାନେ ଚୁଲି ବସେଇ ରାନ୍ଧୁଥିଲେ। ଏଣୁ ନିଆଁ ଧାସରେ ଭୂଇଁ ତାତିବାରୁ ଡୋମା କଡ଼ ଲେଉଟାଇଲା । ଯେଉଁ ପଥର ଉପରେ ସେମାନେ କଡ଼େଇ ବସେଇଥିଲେ ସେଗୁଡ଼ିକ ଘୁଞ୍ଚିଗଲା। ବାଘ ଓ ମାଙ୍କଡ଼ ଭାବିଲେ କ'ଣ ଗୋଟିଏ ଅଘଟଣ ଘଟିବାକୁ ଯାଉଛି। ସେମାନେ ନିଜ ନିଜକୁ ସତର୍କ କରିନେଲେ । ଖାତ ଭିତରେ ଗରମ ଅସହ୍ୟ ହେବାରୁ ଡୋମା ପଦାକୁ ବାହାରିବାକୁ ଲାଗିଲା। ସେମାନଙ୍କ ମାଂସ ରନ୍ଧା କଡ଼େଇ ଓଲଟି ପଡ଼ିଲା, ମାଂସ ଖଣ୍ଡମାନ ଛିନ୍‌ଛତ୍ର ହୋଇପଡ଼ିଲା । ବାଘ ଓ ମାଙ୍କଡ଼ ଭୟ ପାଇ ଡିଆଁ ମାରି ଜଙ୍ଗଲକୁ ଚାଲିଗଲେ ।

ମେଖି ଡୋମା ଭୂଇଁ ଭିତରୁ ବାହାରିଲା ପରେ ଝାଡ଼ିଝୁଡ଼ି ହେଲା । ଚାରିଆଡ଼କୁ ଚାହିଁଲା। ଦେଖିଲା- ବାଘ, ମାଙ୍କଡ଼ କିଏ କୁଆଡ଼େ ଚାଲି ଗଲେଣି। ସିଏ ଆଶ୍ଚର୍ଯ୍ୟ ହେଲା ଆଉ ଭାବିଲା, ଏମିତି କ'ଣ ଅଘଟଣ ହେଲା ଯେ ସେମାନେ ଡରିଗଲେ । ଶେଷରେ ଆଶ୍ୱସ୍ତ ହୋଇ ସେ ଲିଭି ଆସୁଥିବା ନିଆଁକୁ ପୁଣି ତେଜିଲା। ତଳୁ ଗୋଟାଗୋଟି କରି ଭଲ ଅବସ୍ଥାରେ ଥିବା ବାର୍‌ହା ମାଂସଖଣ୍ଡଗୁଡ଼ିକୁ ପୁଣି କଡ଼େଇରେ ପକାଇ ରାନ୍ଧିଲା । ସିଏ ପେଟ ଭରି ମାଂସ ଖାଇଲା ଆଉ ଯାହା ବଳିଲା ଘରକୁ ନେଇ ଫେରିଲା ।



# ବୋକା ମିମି ଅଜା

ମିମି ଜମିରେ ମାଟି ତାଡ଼ିବାକୁ କୋଦାଳ ନେଇ ବାହାରି ପଡ଼ିଲା । ଖରାଦିନର ଟାଣୁଆ ଖରା । ଗାଁ ସାରାର ଲୋକେ ତାକୁ ଅଜା ବୋଲି ଡାକନ୍ତି । ଅଜାର ସେମିତି କିଛି ଆଖି ରୋଚକ ଚେହେରା ନାହିଁ । କିନ୍ତୁ ଅଜାକୁ ଦେଖିଲେ ଲାଗେ ସ୍ନେହୀ ମଣିଷଟିଏ । ଟିମା ଲୋକ । ଗୋଡ଼ ଦି'ଟା ଆଣ୍ଠୁ ତଳକୁ ଭିତରପଟ ଆଡ଼କୁ ବଙ୍କା । ପେଣ୍ଡା ଦୁଇଟି ଉପରକୁ ବହକି ଆସିଛି । ମିମି ଅଜା ଗାଁର ମେଳା ମଉଛବରେ ନିଜର ଛେଳି ଦାଢ଼ିକୁ ଆଉଁସି ଆଉଁସି ପହଞ୍ଚିଯାଏ । ଏହି ବୁଢ଼ା ଅଜାକୁ ଗାଁର ସବୁ ଲୋକ ଭଲ ପାଉଥିଲେ । ଭଲରେ ମନ୍ଦରେ, ପୂନେଇପର୍ବରେ ତାକୁ ଖାଇବାକୁ, ପିନ୍ଧିବାକୁ ଦେଉଥିଲେ ।

ସେ ଶୀଘ୍ର ଶୀଘ୍ର କୋଦାଳରେ କାମ କରିପାରେନି, ଠୁକୁରୁ ଠୁକୁରୁ କାମ କରେ। ଗହମ ବୁଣିବା ପାଇଁ ଯେତେବେଳେ ତାକୁ ଏତେ ବଡ଼ କ୍ଷେତରେ କାମ କରିବାକୁ ପଡ଼ିଲା ସେ ଥକିଗଲା । କ୍ଷେତ ମଝିରେ କଟା ହୋଇଥିବା ଗଛର ଥୁଣ୍ଟା ପାହାଡ଼ ମୁଣ୍ଡିଆ ଭଳି ଠିଆ ହୋଇଥିଲା । ସେ ଥୁଣ୍ଟା ପାଖରେ ଦଣ୍ଡେ ଠିଆ ହେଲା ଆଉ ଦାଢ଼ି ଆଉଁସିଲା । ମନସ୍ଥ କଲା, ଯେମିତି ହେଲେ ତାକୁ ଥୁଣ୍ଟାଟିକୁ ଓପାଡ଼ିବାକୁ ପଡ଼ିବ। ସେ ଚାରିଆଡ଼ୁ ଧୀରେଧୀରେ ତାଡ଼ିବାକୁ ଲାଗିଲା । ଖରାଦିନ । ଦେହରୁ ଗମ୍‌ଗମ୍ ଝାଳ ବୋହୁଥାଏ । ମଝି ମଝିରେ ଚେରକୁ ମାଟି ଭିତରୁ ଟାଣିବାପାଇଁ ଚେଷ୍ଟା କରୁଥାଏ । ତା'ର ହାତ ଫୋଟକା ହୋଇଗଲା । ସେତେବେଳକୁ ବେଳ ଗଡ଼ିଆସିଲାଣି । ସୂର୍ଯ୍ୟ ପଶ୍ଚିମ ପାହାଡ଼ ପଛରେ ଅସ୍ତ ହେବାକୁ ବସିଲେଣି । ସେ ଏକାଥରକେ କଷିକରି ଥୁଣ୍ଟାଟିକୁ ମାଟିରୁ ଉପାଡ଼ି ଦେଲା । ମଡ଼ ମଡ଼ ହେଇ ଥୁଣ୍ଟା ଚେରମୂଳ ସହ ଉପୁଡ଼ି ଆସିଲା ।

ଗଛର ଥୁଣ୍ଟାଟି ଉପୁଡ଼ି ଯିବାରୁ ସେଠି ଭୂଇଁରେ ଗୋଟିଏ ଗାତ ହୋଇଗଲା ଆଉ ଗାତ ଭିତରେ ସେ ଯାହା ଦେଖିବାକୁ ପାଇଲା ସେଥିରେ ତାର ହାଲୁକ ଶୁଖିଗଲା। ନୀଳବର୍ଣ୍ଣରେ ଗୋଲିଆ ଚେପ୍‌ଟା ରତ୍ନପଥରଟିଏ । ଛୋଟିଆ ମୋଟିଆ ନୁହେଁ, ରୁଟି ଭଳିଆ ତା' ଆକାର । ଅଜା ଖୁବ୍ ଖୁସି ହୋଇଗଲା । ସେ ଭାବିଲା, ତାକୁ ନେଇ ବଜାରରେ ବିକିବ । ଯାହା ପଇସା ପାଇବ ସେଥିରେ ଜୀବନ ସାରା ଆରାମ କରିବ। ତାକୁ ଆଉ ବିଲରେ ଖଟିବାକୁ ପଡ଼ିବନି ।

ଅଜା ରାସ୍ତାରେ ଲୋକଟିଏକୁ ଭେଟିଲା । ସେ ଗୋଟିଏ ଘୋଡ଼ାଟିଏକୁ ଚଲେଇ ଚଲେଇ ନେଉଥିଲା । ସେ ଅଜାକୁ ଚିହ୍ନିପକେଇ ପଚାରିଲା, 'ମିମି ଅଜା କୁଆଡ଼େ ବାହାରିଚ ?' ଏବେ ମିମି ଅଜା ଖୁସିରେ ଗଦଗଦ ହେଇ ଯାହା ସବୁ ଘଟିଯାଇଛି ବଖାଣିଗଲା । ଅଜା କହିଲା, 'ମୋ ରତ୍ନପଥରଟି ନେ ଆଉ ମୋତେ ତା' ବଦଳରେ ତୋ' ଘୋଡ଼ାଟି ଦେ ।' ଲୋକଟି

ଭାବିଲା ମିମି ପାଗଳ । ଏତେ ମୂଲ୍ୟବାନ ରତ୍ନପଥର, ତା' ଆଗରେ ଏ ଘୋଡ଼ାର ମୂଲ୍ୟ କିଛି ନୁହେଁ । ଲୋକଟି ଏଭଳି ସୁଯୋଗ ହାତଛଡ଼ା ନକରି ମିମି କଥାରେ ରାଜିହେଇ ଘୋଡ଼ାଟି ତାକୁ ଦେଇ ରତ୍ନପଥରଟି ନେଇଗଲା । ମିମି ଅଜାର ମନରେ ତିଳେ ହେଲେ ଅନୁଶୋଚନା ନାହିଁ, ଘୋଡ଼ାଟିକୁ ସାଙ୍ଗରେ ନେଇ ସେ ଚାଲିଲା । ସେ କିଛିବାଟ ଯାଇଛି କି ନାହିଁ ଦେଖିଲା ଆଉ ଜଣେ ଲୋକ ଷଣ୍ଢଟିଏର ବେକରେ ପଘା ବାନ୍ଧି ତାକୁ ନେଇ ଚାଲିଛି । ମିମି ଅଜାକୁ କିଏ ବା ନଚିହ୍ନେ । ଲୋକଟି ପଚାରିଲା, 'ମିମି ଅଜା ଘୋଡ଼ାଟି ନେଇ କୁଆଡ଼େ ଚାଲିଚ ।'

ମିମି ଅଜା ପୁଣି ସବୁକଥା ମୂଳରୁ ବଖାଣିଗଲା । ସିଏ କିଭଳି ତା' ଜମିରୁ ଥୁଣ୍ଟାଟିଏ ଉପାଡୁଥିଲା । ଆଉ କେମିତି ନୀଳବର୍ଣ୍ଣର ରତ୍ନପଥରଟିଏ ପାଇଲା । ରତ୍ନପଥର ବିକ୍ରିପାଇଁ ହାଟକୁ ଗଲାବେଳେ ଲୋକଟିଏ ଘୋଡ଼ା ନେଇ ଯାଉଥିବାର ଦେଖିଲା ଏବଂ ରତ୍ନ ବଦଳରେ ଘୋଡ଼ାଟିଏ ଆଣିଛି । ଅଜା ଏବେ ତାକୁ ପଚାରିଲା, 'ତମେ ମୋ' ଘୋଡ଼ାଟି ନେଇ ଷଣ୍ଢଟି ଦେବ ?'

ଷଣ୍ଢକୁ ବାଟ କଢ଼େଇ ନେଉଥିବା ଲୋକଟି ମିମିର ବୋକାମି କଥାରେ ଅବାକ୍ ହୋଇ ଅନେଇ ରହିଲା । କାହିଁ ଏ ହୃଷ୍ଟପୁଷ୍ଟ ଘୋଡ଼ା ଆଉ କାହିଁ ଏ ଷଣ୍ଢ । ଆକାଶ ପାତାଳ ଫରକ । ମିମି ଅଜା ନିହାତି ବୋକାଟିଏ ନିଶ୍ଚୟ । ସିଏ ଭାବିଲା ତା'ର ଯାଏ ଆସେ କେତେ । ଅଜାର ହାତକୁ ଷଣ୍ଢର ପଘାଟି ବଢ଼େଇ ଦେଇ ଘୋଡ଼ାଟି ନେଇ ଚାଲିଗଲା । ପୁଣି କିଛି ବାଟ ଆଗେଇଛି କି ନାହିଁ ମିମି ଅଜା ଦେଖିଲା ଲୋକଟିଏ ମେଣ୍ଢାଟିଏ ଧରି କୁଆଡ଼େ ଚାଲିଛି । ମିମି ଅଜା ତା' ଆଗରେ ସବୁକଥା ପୁଣି ବଖାଣିଲା । ସେ ଗଛର ଚେର ଉପାଡୁ ଉପାଡୁ କିଭିଳି ନୀଳବର୍ଣ୍ଣର ରତ୍ନପଥରଟିଏ ପାଇଲା, ତା'କୁ କିଭଳି ବଦଳ ଦେଇ ଘୋଡ଼ାଟିଏ ଆଣିଲା । ପୁଣି କିଭଳି ଘୋଡ଼ାକୁ ବଦଳେଇ ଷଣ୍ଢଟିଏ ପାଇଛି ସବୁ କଥା କହିଲା ।

ଲୋକଟିର ମେଣ୍ଢାଟିକୁ ଦେଖି ମିମି ଅଜା ପଚାରିଲା, 'ମୋର ଷଣ୍ଢଟିକୁ ନେଇ ତା' ବଦଳରେ ତମ ମେଣ୍ଢାଟିକୁ ମୋତେ ଦେବ ?' ଲୋକଟି ଭାବିଲା, ମିମି ନିଶ୍ଚୟ ଜଣେ ପାଗଳ, ନହେଲେ ବୋକା । ମନେ ମନେ ଖୁସି ହେଇ ଲୋକଟି ଅଜା ହାତକୁ ମେଣ୍ଢାଟି ବଢ଼େଇ ଦେଇ ଷଣ୍ଢଟି ନେଇ ତା' ବାଟରେ ଆଗେଇଲା ଆଉ ମେଣ୍ଢାଟି ଅଜାକୁ ନୂଆ ଚିହ୍ନି ମେଁ ମେଁ କରି ପଛେ ପଛେ ଚାଲିଲା ।

ମିମି ଅଜା କିଛିବାଟ ମେଣ୍ଢାକୁ ନେଇ ଯାଇଛି ଦେଖିଲା ପାଖ ଗାଁର ଲୋକଟିଏ ଗଞ୍ଜାଟେ କାଖରେ ଜାକି ଚାଲିଛି । ଲୋକଟି ମିମି ଅଜାକୁ ଚିହ୍ନି ପାରି ପଚାରିଲା, 'ମିମି ଅଜା ମେଣ୍ଢାଟିଏ ନେଇ କୁଆଡ଼େ ଚାଲିଚ ?' ମିମି ମାଟି ତାଡ଼ିବାଠାରୁ ଆରମ୍ଭ କରି ମେଣ୍ଢା ବଦଳ ପର୍ଯ୍ୟନ୍ତ ସବୁକଥା ଗୋଟି ଗୋଟି କରି କହି ଚାଲିଲା । ତା'ର କଥା ସରିଲା ପରେ ମିମି ଅଜା ପାଖ ଗାଁ ଲୋକଟିକୁ ପଚାରିଲା, 'ତମେ ମୋ ମେଣ୍ଢା ବଦଳରେ ତୁମ ଗଞ୍ଜାଟି ଦେବ ?' ଲୋକଟି ମନେମନେ ଭାବିଲା ମିମି ଅଜା ନିଶ୍ଚେ ପାଗଳ ହୋଇଗଲାଣି । ଗୋଟିଏ ମେଣ୍ଢାର ଦାମ୍ କେତେ ଆଉ ତା' ସାଙ୍ଗରେ ଏ ଗଞ୍ଜା କ'ଣ ସରି ହେବ । ସେ ଖୁସିରେ ଗଞ୍ଜାଟିକୁ ମିମି ଅଜାକୁ ଧରେଇ ଦେଇ ମେଣ୍ଢାଟି ନେଇ ଚାଲିଗଲା ।

ଏହାପରେ ଅଳ୍ପ ବାଟ ଯାଇଛି କି ନାହିଁ ମିମି ଅଜା ଦେଖିଲା, ଲୋକଟିଏ ମହା ଆନନ୍ଦରେ ଗୀତ ଗାଇ ଗାଇ ଚାଲିଛି । ମିମି ଅଜାକୁ ଖଣ୍ଡମଣ୍ଡଳରେ କିଏ ବା ନଚିହ୍ନେ । ଲୋକଟି ଅଜାକୁ ଖୁସିବାସରେ ପଚାରିଲା, 'ଅଜା ଖବର କ'ଣ, ଗଞ୍ଜାଟିକୁ ନେଇ କୁଆଡ଼େ ଚାଲିଲ ?' ଏତିକି କଥାରେ ଅଜା ସବୁ ବଖାଣିଗଲା । ସିଏ କିଭଳି ମାଟି ତାଡୁଥିଲା, କିଭଳି ରତ୍ନପଥର ପାଇଲା । ରତ୍ନପଥରକୁ ପ୍ରଥମେ ଘୋଡ଼ା ସହିତ, ପୁଣି ଘୋଡ଼ାକୁ ଷଣ୍ଢ, ଷଣ୍ଢକୁ ମେଣ୍ଢା ଓ ଶେଷରେ ମେଣ୍ଢାକୁ ଗଞ୍ଜା ସହିତ ବଦଳେଇଚି ଗାଇଗଲା । ଶେଷରେ ମିମି ଅଜା

ଲୋକଟିକୁ କହିଲା, 'ହେ ଭାଇ ମୋ' ଗଞ୍ଜାଟି ନିଅ ଆଉ ତମେ ଗାଉଥିବା ଗୀତଟି ମୋତେ ଦିଅ ।'

ଲୋକଟି ମିମିଅଜାର କଥାଶୁଣି ଆଶ୍ଚର୍ଯ୍ୟ ହେଇ ଦଣ୍ଡେ ଠିଆ ହୋଇ ରହିଲା । ଭାବିଲା, ଏମିତି ବୋକା ଲୋକ ପୁଣି ଦୁନିଆରେ ଥାଆନ୍ତି ! ତେବେ ଯାହାହେଉ, ସେ ଅଜାଠାରୁ ଗଞ୍ଜାଟି ନେଇ ଚାଲିଲା । ମିମିଅଜା ସେହି ଲୋକଠାରୁ ଗୀତ ପଦେ ଶିଖି ମହାଆନନ୍ଦରେ ଗାଇ ଗାଇ ଖାଲି ହାତରେ ଘରକୁ ଫେରିଲା - 'ସୋମ୍ ଏ ଲେ, ଉଲେ, ପେ ଉଲେ, ପେ, ସୋମ୍ ଏ ଲେ... ।'

ଆମେ ଏଠି ଯେମିତି ମନଖୁସିରେ ଗାଇଥାଉ, 'ନାନାରେ ନାନା, ରେ ନାନା, ରେ, ରେ, ରେ ।'



# ମୂଷା ମାଉସୀ

ପାହାଡ଼ର ଗଡ଼ାଣିରେ ଛୋଟିଆ ଗାଁଟିଏ । ଗାଁକୁ ଘେରି ରହିଛି ଓ୍ୱିଲୋ ଗଛର ଜଙ୍ଗଲ । ଏହି ଗଛର ଡାଳପତ୍ର ତାରକସି କାମ ଭଳି ଦେଖିବାକୁ ବେଶ୍ ସୁନ୍ଦର । ଗାଁର ପ୍ରତ୍ୟେକ ପରିବାର କିଛି କିଛି ମେଣ୍ଢା ପାଳିଥାନ୍ତି । ଗୋଟିଏ ଗରିବ ଝିଅ ଗାଁଯାକର ମେଣ୍ଢାପଲକୁ ଚରେଇବାକୁ ନିଏ । ତା' ନାଁ ସୁନା । ଗାଁ ପାରିହେଇ କିଛିବାଟ ଗଲାପରେ ପଡେ ପାଇନ୍ ଗଛର ଜଙ୍ଗଲ । ସେଇ ଜଙ୍ଗଲରେ ମେଣ୍ଢାମାନଙ୍କ ଚରିବାପାଇଁ ବହୁତ ଘାସ ମିଳେ। ମେଣ୍ଢାମାନେ ଯେତେବେଳେ ଘାସ ଚରନ୍ତି, ସୁନା ଗୋଟିଏ ବଡ଼ ପଥର ଉପରେ ବସି ଉଲ୍ ବୁଣେ । ମଝି ମଝିରେ ସିଏ ତାର ତାକୁଡ଼ିକୁ

ପଥର ତଳକୁ ଝୁଲେଇ ଧରି ଦେଖେ ଉଲ୍‌ସୂତା ବଳିବଳି ହେଇ କେମିତି ଲମ୍ବି ଯାଉଛି । ଏଭଳି କରିବାକୁ ତାକୁ ଭାରି ମଜା ଲାଗେ । ସିଏ ସୂତାକୁ ଆହୁରି ଲମ୍ବା କରିବାପାଇଁ ତାକୁଡ଼ିକୁ ତଳକୁ ତଳକୁ ଖସେଇଦିଏ ।

ଖରା ମୁଣ୍ଡ ଉପରକୁ ଉଠିଲେ, ତା'ର ବୁଜୁଲା ଖୋଲି ଗହମ ରୁଟିକୁ ଲଙ୍କା ଆଚାର ଦେଇ ଖାଏ ଏବଂ ସୂର୍ଯ୍ୟ ପଶ୍ଚିମ ଦିଗରେ ବୁଡ଼ିଗଲେ ମେଣ୍ଢାପଲକୁ ଅଡ଼େଇ ନେଇ ଗାଁରେ ପହଞ୍ଚେ । ଏହା ହେଲା ସୁନାର ନିତିଦିନିଆ କାମ । ଅନେକ ଦିନ ହେଲା ସେ ଏହି କାମ କରିଆସୁଛି ।

ଦିନେ ସୂର୍ଯ୍ୟ ମୁଣ୍ଡଉପରକୁ ଉଠିଲାରୁ ସୁନା ପଥର ଉପରେ ବସି ତାର ବୁଜୁଲା ଖୋଲିଲା । ସିଏ ଅନ୍ୟମନସ୍କ ଥିଲା କି କ'ଣ, ଖାଦ୍ୟ ବୁଜୁଲାଟି ହାତରୁ ଖସିପଡ଼ି ପଥର ଦେହରେ ବାଡ଼େଇ ହୋଇ ଗଡ଼ିଗଡ଼ି ତଳକୁ ଚାଲିଗଲା । ବିଚାରି ଗଛ ଡାଳଧରି ବଡ଼ କଷ୍ଟରେ ପଥର ଉପରୁ ଓହ୍ଲାଇଲା ଏବଂ ବୁଜୁଲାଟି ଧରିବାକୁ ଯାଉଛି ତାହା ଗୋଟିଏ ମୂଷା ଗାତରେ ଗଳିଗଲା । ତାକୁ ଆଉ ବୁଦ୍ଧି ଦିଶିଲାନି କ'ଣ କରିବ । ହତାଶ ହେଇ ମୂଷାଗାତ ପାଖରେ ଠିଆହେଲା ଏବଂ ବଡ଼ ପାଟିରେ ଡାକିଲା, 'ମୂଷାମାଉସୀ, ତମର ଯଦି ରୁଟିତକ ଖାଇବାପାଇଁ ଇଚ୍ଛା ହେଉଛି ଖାଅ କିନ୍ତୁ ମୋ ଡବାଟି ଫେରେଇ ଦିଅ ।'

ମୂଷା ମାଉସୀ ଗାତ ଭିତରେ ଥାଇ କହିଲା, 'ତୁ ଗାତ ଭିତରକୁ ଓହ୍ଲେଇ ଆସୁନୁ ।'

ସୁନା ବାହାରେ ଠିଆହେଇ ଉତ୍ତର ଦେଲା, 'ଗାତର ମୁହଁ ଏତେ ଛୋଟ ଯେ ମୁଁ ସେଥିରେ ପଶିବି କେମିତି ।'

ମୂଷା ମାଉସୀ କହିଲା,'ତୁ ତୋ ଆଖି ବନ୍ଦ କର ଆଉ ଗାତ ଭିତରେ ଗଳିପଡ଼ ।'

ମୂଷା ମାଉସୀ ଯେଭଳି କହିଥିଲା ସୁନା ସେଭଳି କଲା । ସେ ଆଖି ଖୋଲିଲା ପରେ ଦେଖିଲା, ମୂଷା ମାଉସୀର ଘରେ ପହଞ୍ଚି ଯାଇଛି ।

ମାଉସୀ କହିଲା, 'ରାତି ତ ହେଲାଣି ମୋ ଘରେ ଶୋଇ ପଡ଼ୁନୁ !' ସୁନାକୁ ମୂଷା ମାଉସୀର କଥା ଆଶ୍ଚର୍ଯ୍ୟ ଲାଗିଲା । କିନ୍ତୁ ସେ ସେହି ରାତିକ ରହିଯିବା ପାଇଁ ରାଜି ହେଲା । ମୂଷା ମାଉସୀ ସୁନାଠାରୁ ଜାଣିବାକୁ ଚାହିଁଲା, ସିଏ କ'ଣ ଖାଇବାକୁ ଭଲପାଏ । ଝିଅଟି କହିଲା, 'ମୁଁ ତ ଗରିବ ଘରର ଝିଅ ମାଉସୀ, ମୋତେ ଆଉ ପଚାରୁଛ କ'ଣ, ଯାହାହେଲେ ମୋର ଚଳିବ, ବାସି ରୁଟି, ବାସି ପଖାଳ, ଯାହା ଅଛି ଦିଅ ।'

ମୂଷା ମାଉସୀ କିନ୍ତୁ ରଜାଖାନାଟିଏ ରାନ୍ଧିଲା । ମାଉସୀ ଆଉ ସୁନା ଦୁହେଁ ମିଶି ମହା ଆନନ୍ଦରେ ଖାଇଲେ । ଏବେ ଶୋଇବାର ବେଳ । ସୁନାର କେମିତିକା ବିଛଣା ଦରକାର ବୋଲି ମାଉସୀ ପଚାରିଲା । ସୁନା କହିଲା, ମୁଁ ତ ଗରିବ ଘରର ଝିଅ । ସପ, କୋତରାକନ୍ଥା ଯାହାହେଲେ ଚଳିବ । ମାଉସୀ ତୁଳାଦିଆ ଗଦି, ତକିଆ, ସଫା ବିଛଣା ଚାଦର ପଲଙ୍କ ଉପରେ ପାରିଦେଲା ଓ ଘୋଡ଼େଇ ହେବାପାଇଁ କଅଁଳ କମ୍ବଳଟିଏ ମଧ୍ୟ ଦେଲା । କିନ୍ତୁ ଶୋଇବା ପୂର୍ବରୁ ଝିଅକୁ ସତର୍କ କରିଦେଲା, 'ଦେଖ, ରାତିରେ ଧଡ଼୍‌ଧାଡ଼୍, ଖଡ଼୍‌ଖାଡ଼୍ ଶବ୍ଦ ହୋଇପାରେ । ମୁଣ୍ଡବାଳକୁ କିଏ ଟଣା ଓଟରା କରୁଛି ଲାଗିପାରେ । ତୁ ଜମାରୁ ଡରିବୁନି ।' ମାଉସୀ ଯାହା କହିଥିଲା ସତ । ରାତିସାରା ସୁନା ଅନୁଭବ କଲା ତା' ବାଳକୁ କିଏ ଯେମିତି ଟାଣୁଛି, ଗଣ୍ଠି ପକେଇଲା ଭଳି କରୁଛି ।

ଝିଅଟିର ନିଦ ଭାଙ୍ଗିବା ଆଗରୁ ମୂଷା ମାଉସୀ ଶେଯରୁ ଉଠିପଡ଼ି ସକାଳର ଜଳଖିଆ ତିଆରି କରିସାରି ଝିଅ ହଜେଇ ଦେଇଥିବା ଡିବା ଭିତରେ ରଖି ବୁଜୁଳା ବାନ୍ଧି ଦେଇଥିଲା । ଝିଅର ହାତକୁ ବୁଜୁଳାଟି ବଢ଼େଇ ଦେଇ କହିଲା, 'ନେ ଘରେ ନ ପହଞ୍ଚିବା ପୂର୍ବରୁ ତୁ ଜମାରୁ ବୁଜୁଳା ଖୋଲିବୁନି ।' ଏବେ ଆଖି ବନ୍ଦ କର ।

ସୁନା ଆଖି ଖୋଲିଲାବେଳକୁ ଦେଖିଲା ସିଏ ତା'ର ମେଣ୍ଢାପଲ ପାଖରେ ଅଛି । ତାକୁ ଲାଗିଲା ତା' ମୁଣ୍ଡ ବାଳ ଦେହରେ ମୂଲ୍ୟବାନ



ପଥର, ହୀରା, ନୀଳା ଓ ମାଣିକ୍ୟ ସବୁ ଗୁନ୍ଥା ହେଇଛି । ସେ ବୁଜୁଳାଟି ଧରି ଘରମୁହାଁ ହୋଇ ଧାଇଁଲା । ଆଉ ଘରେ ପହଞ୍ଚି ବୁଜୁଳାରୁ ଡିବା ଖୋଲି ଦେଖିଲା, ସେଥିରେ ଆହୁରି ଅଳଙ୍କାରମାନ ଖୁନ୍ଦା ହୋଇରହିଛି ।

ଗାଁରେ ରହୁଥିବା ଧନୀ ଘରର ଝିଅ ସୁନାର ଧନସଂପତ୍ତି ଦେଖି ସହିପାରିଲାନି । ସିଏ ମେଣ୍ଢାଜଗାଳି ଝିଅ ସୁନାକୁ ଧନସମ୍ପତ୍ତିର ଗୁମର ପଚାରିଲା । ସୁନା ତ ଅତି ସରଳ । ସିଏ ସବୁ ସତକଥା କହିପକାଇଲା । ଏକଥା ଶୁଣି ସଂପତ୍ତି ପାଇବା ପାଇଁ ଧନୀଘର ଝିଅର ଭାରି ଲୋଭ ହେଲା । ଭାବିଲା ସେ ବି ମେଣ୍ଢାପଲ ଜଙ୍ଗଲକୁ ନେଇ ଚରେଇବ । ଗରିବ ଘର ଝିଅ ସୁନା ଯେମିତି କହିଥିଲା, ସିଏ ସେମିତି କଲା । ମୂଷା ମାଉସୀର ଘରେ ପହଞ୍ଚି ତାର କୁଣିଆ ହେଲା । ମୂଷା ମାଉସୀ ଯେତେବେଳେ ଧନୀ ଝିଅଠାରୁ ଜାଣିବାକୁ ଚାହିଁଲା ସିଏ ରାତିରେ କ'ଣ ଖାଇବ, ଝିଅ ବଡ଼େଇ

କରି ମାଉସୀକୁ ଉତ୍ତର ଦେଲା, ସେ ଧନୀଘରର ଝିଅ ଏଣୁ ରଜାଖାନା ଛଡ଼ା ଆଉକିଛି ଖାଇବ ନାହିଁ । ମାଉସୀ ମନେ ମନେ ରାଗିଯାଇ ତାକୁ ଖାଇବାକୁ ବାସିରୁଟି, ପୁରୁଣା ଆଚାର ଆଉ ପିଇବାକୁ ଆମ୍ବିଳ ତୋରାଣି ବାଢ଼ି ଦେଲା । ପୁଣି ମୂଷା ମାଉସୀ ତାକୁ ପଚାରିଲା,'ଶୋଇବାପାଇଁ କେମିତିକା ଶେଯ ଦରକାର ?' ଧନୀ ଘରର ଝିଅ କହିଲା, 'ହଂସୁଲି ଶେଯ ।' ମୂଷା ମାଉସୀ ତା' ଘର କୋଣରେ ଛିଣ୍ଡା କୋତରା ଅଖା ପଡ଼ିଥିଲା, ତାକୁ ଦେଖେଇ କହିଲା, 'ଏଠି ଶୋଇପଡ଼'। ପୁଣି ମାଉସୀ ଧନୀଘରର ଝିଅକୁ ସତର୍କ କରିଦେଲା ଯେ ରାତିରେ ଖଡ଼୍‌ଖାଡ଼୍, ଧଡ଼୍‌ଧାଡ଼୍ ଶବ୍ଦ ହେବ ଆଉ ତାର ମୁଣ୍ଡବାଳ ମଧ୍ୟ ଟଣା ହେଲା ଭଳି ଲାଗିବ, ସେ ଡରିଯିବନି ।

ଧନୀ ଘରର ଝିଅ କ'ଣ ସବୁ ଘଟିପାରେ ଅନୁମାନ କରିନେଲା । ରାତିରେ ଯେତେବେଳେ କିଏ ତା'ର ବାଳ ଝିଙ୍କିଲା ଭଳି ଲାଗିଲା, ସିଏ କଣେଇ କଣେଇ ଦେଖିଲା, ଗଣ୍ଡେ ଦିଗଣ୍ଡା ମୂଷା ତା' ମୁଣ୍ଡ ବାଳରେ କ'ଣ ସବୁ ଗୁନ୍ଥୁଛନ୍ତି । ଏକଥା ଦେଖି ତା'ର ଆନନ୍ଦ କହିଲେ ନସରେ । ସିଏ ଆନନ୍ଦରେ ସ୍ୱପ୍ନ ଦେଖିଲା; ମୂଷାମାନେ ତା' ମୁଣ୍ଡରେ ହୀରା, ନୀଳା, ମୋତି, ମାଣିକ୍ୟ ଖଞ୍ଜୁଛନ୍ତି ।

ସକାଳୁ ଉଠିପଡ଼ି ମୂଷା ମାଉସୀ ଡିବା ଭର୍ତ୍ତି କରି ବୁଜୁଳାଟି ଧରେଇ ଦେଇ କହିଲା, 'ଆଖି ବୁଜ ।' ଧନୀଘରର ଝିଅ ଆଖି ଖୋଲିଲାବେଳକୁ ଦେଖେତ ସିଏ ମେଣ୍ଟାପଲ ସାଙ୍ଗରେ । ସିଏ ତା' ମୁଣ୍ଡରେ ହାତ ମାରି ଦେଖିଲା ମୁଣ୍ଡଯାକ ମୂଷା ଲେଣ୍ଡି । ସିଏ ଆଉ ଘରକୁ ଯିବା ଯାଏଁ ଅପେକ୍ଷା ନକରି ବୁଜୁଳା ଭିତର ଡିବାଟି ଖୋଲି ଦେଖିଲା, ସେଥିରେ ମୂଷା ଲଣ୍ଡି, ଶୁଖିଲା ଘାସ, ଶିଉଳି ସବୁ ଖୁନ୍ଦା ହେଇଛି । ଧନୀଝିଅଟି ଅସମ୍ଭବ ଭାବେ ମୂଷା ମାଉସୀ ଉପରେ ରାଗିଗଲା । ଲଜ୍ଜା ଏବଂ ଅପମାନରେ ତା' ଆଖିରୁ ଲୁହ ଝରିଗଲା । ଅତି ଲୋଭ କଲେ, ପରକୁ ଈର୍ଷା କଲେ ଏମିତି ହିଁ ଫଳ ମିଳେ ।



# ଭୂତ ଭୟ

ଭୁଟାନ ଦେଶର ଗୋଟିଏ ଗାଁରେ ବଣିକଟିଏ ତା'ର ସ୍ତ୍ରୀ ଓ ଝିଅ ସାଙ୍ଗରେ ରହୁଥାଏ । ସେ ବେପାର କରିବାପାଇଁ ତିବ୍ବତ ଓ ଭାରତକୁ ଅଧିକାଂଶ ସମୟରେ ଯାଏ । ଥରେ ତା' ନିକଟରେ ଥିବା ଲୁଣ ଶେଷ ହୋଇଗଲା । ସେ ଭାରତକୁ ଆସିବାପାଇଁ ମନସ୍ଥ କରି ତା'ର ଗଧମାନଙ୍କୁ ଖୁଆଇ ପିଆଇ ମୋଟାଶୋଟା କଲା । ରାସ୍ତାରେ ନିଜେ ଖାଇବାପାଇଁ ଓ ଗଧମାନଙ୍କ ପାଇଁ ଖାଦ୍ୟପଦାର୍ଥ ଯୋଗାଡ଼ କଲା । ତା'ପାଖରେ ଥିବା ଟଙ୍କାସବୁ ଗଣାଗଣି କରି ଦେଖିଲା ତାହା ରାସ୍ତା ଖର୍ଚ୍ଚ ପାଇଁ ଯଥେଷ୍ଟ ହେବ । ତା'ର ଧାରଣା ହେଲା ଯେହେତୁ ସବୁ ଠିକ୍‌ଠାକ୍ ଅଛି, ଏଣୁ ତା'ର ଯାତ୍ରା ନିଶ୍ଚୟ ସଫଳ ହେବ । ଭାରତରୁ ଲୁଣ କିଣି ଆଣିବ । ତାକୁ ତିବ୍ବତରେ

ବଦଳଦେଇ ଧାନ ସଂଗ୍ରହ କରିବ ଏବଂ ଭୁଟାନରେ ଧାନ ବିକି ପ୍ରଚୁର ଅର୍ଥ ରୋଜଗାର କରିବ । ଏହାହିଁ ଥିଲା ତାର ଯୋଜନା । ସେ ତା' ସ୍ତ୍ରୀ ଓ ଝିଅଠାରୁ ବିଦାୟ ନେଇ ବଣିଜ କରିବାକୁ ଭାରତ ବାହାରିଲା ।

ସେ ଗାଁରେ ନଥିବା ଭିତରେ ତା' କ୍ଷେତରେ ଫଳିଥିବା ଧାନ ଅମଳ ହୋଇ ବିକା ସରିଲା । ବଣିକ କିନ୍ତୁ ଘରକୁ ଫେରିଲା ନାହିଁ । ଦିନ ଯାଇ ପକ୍ଷ ହେଲା, ମାସ ବିତିଲା ତଥାପି ବି ବଣିକର ଦେଖା ନାହିଁ । ତା' ସ୍ତ୍ରୀ ଓ ଝିଅଙ୍କ ମନରେ ଘୋର ଆଶଙ୍କା ସୃଷ୍ଟି ହେଲା । ସେମାନେ ନିଶ୍ଚିତ ହେଲେ ଯେ ବଣିକକୁ ଘୋର ବିପତ୍ତି ପଡ଼ିଛି । ବଣିକ ରାସ୍ତାରେ ଆବଶ୍ୟକ ପଡ଼ିବ ବୋଲି ସବୁ ଦରବ ନେଇ ନିଜକୁ ନିଖୁଣ କରି ପ୍ରସ୍ତୁତ କରିଥିଲେ କ'ଣ ହେବ ? ମ୍ୟାଲେରିଆ ଜ୍ୱରକୁ ସେ ସମୟରେ ଯମର ମଧ୍ୟ ଭୟ । ଜଙ୍ଗଲ ଭିତର ଦେଇ ଗଲାବେଳେ ଜଙ୍ଗଲି ମଶାମାନେ କାମୁଡ଼ି ପକାନ୍ତି । ମ୍ୟାଲେରିଆରେ ଆକ୍ରାନ୍ତ ହୋଇ ଶେଷରେ ମଣିଷର ପ୍ରାଣଟି ଯାଏ । ବଣିକର ଭାଗ୍ୟରେ ତାହା ହିଁ ଘଟିଥିଲା ।

ଦିନେ ରାତିରେ ଗାଁ ମୁଣ୍ଡରେ କୁକୁରମାନେ ଏକା ସାଙ୍ଗରେ ବିକଳରେ ଭୁକିଲେ । ମା' ଓ ଝିଅ ଅନୁଭବ କଲେ ସେମାନଙ୍କ ଘର ବାହାରେ କିଏ ଜଣେ ସେମାନଙ୍କ ନାଁ ଧରି ଡାକୁଛି । ବାପାଙ୍କ ସ୍ୱର ଭଳି ମନେହେଉଛି । କିନ୍ତୁ କୁକୁରମାନଙ୍କ ହାଉଳି ଓ ଗୁରାଳିରୁ ଠଉରେଇ ନେଲେ ଯେ ଏହି ସ୍ୱର ମଲାମଣିଷର । ବଣିକ ତ ଭୂତ ହୋଇଯାଇଛି । ଭୂତ ନା ମୁଣ୍ଡ ନୁଆଁଇ ଘରେ ପଶିପାରିବ ନା ଗୋଡ଼ ଉଠାଇ ଏରୁଣ୍ଡିବନ୍ଧ ଡେଇଁପାରିବ । ସେ ତା' ପୂରା ଦେହଟାକୁ କବାଟରେ ବାଡ଼େଇ ବାଡ଼େଇ କବାଟ ଭାଙ୍ଗି ଘର ଭିତରେ ପଶିଲା । ନିଜ ସ୍ତ୍ରୀ ଓ ଝିଅଙ୍କୁ ଖୋଜିଲା । ମା' ଓ ଝିଅ ନିଜର ଅତି ପ୍ରିୟ ଲୋକର ଭୂତକୁ ଦେଖି ଡରିଗଲେ । ଭୂତର ରୂପ ବଡ଼ ଭୟଙ୍କର । ଆଖିଗୁଡ଼ିକ ଖୁବ୍ ବଡ଼ବଡ଼, ଡିମା ଡିମା ଓ ଗୋଲ୍ ଗୋଲ୍ । ପାଟିରୁ ଦାନ୍ତଗୁଡ଼ିକ ପଦାକୁ ବାହାରିପଡ଼ି ମୁହଁ ବିକଟାଳ ଦେଖାଯାଉଛି । ତା'

ଦେହ ପାଉଁଶିଆ ପଡ଼ିଯାଇଛି । ସେ ଲୁଗାପଟା ନପିନ୍ଧି ଉଦଣ୍ଡ ଲଙ୍ଗଳା । ମୁଣ୍ଡର ବାଳ ଲୁହାର ତାର ଭଳି ସିଧା ସିଧା ମୁଣ୍ଡ ଉପରେ ଉଠିଛି । ସେ ସୋରିଷ କ୍ଷେତ ଦେଇ ଆସିଥିବାରୁ ଗୋଡ଼ ଆଙ୍ଗୁଠି ସନ୍ଧାରେ ହଳଦିଆ ରଂଗର ଗୁଣ୍ଡ ଫୁଲ ଲାଖି ହେଇ ରହିଛି । ଭୂତ ଘରେ ପଶି ଚୁଲିର ନିଆଁ ତେଜିବାକୁ ଚେଷ୍ଟା କଲା । ପ୍ରାଣ ଅଛି ଯେ ପାଟିରୁ ନିଃଶ୍ୱାସ ବାହାରିବ । ଭୂତମାନଙ୍କ ଦସ୍ତୁର ହେଲା ସେ ଯାହାକୁ ଦେଖିବେ ତାକୁ ଛୁଇଁ ଦେଇ ଭୂତରେ ପରିଣତ କରିଦେବେ । ମା' ଓ ଝିଅ ଘର ଆଟୁକୋଣରେ ଲୁଚିଗଲେ । ଭୂତ ବହୁତ ଖୋଜାଖୋଜି କଲେ ମଧ୍ୟ ପାଇଲାନି । ଠିକ୍ ଏହି ସମୟରେ, 'କୁକ୍ କୁ ରେ କୁ' କରି କୁକୁଡ଼ା ରାବିଲା । କୁକୁଡ଼ା ରାବିଲେ ଭୂତର ଆୟୁଷ ସରିଯାଏ । ଗଲାବେଳେ କହିଲା, 'ତୁମେମାନେ ଆଜି ଆଉ ଥରେ ଜିତିଗଲ'।

ତା' ପରଦିନ ସନ୍ଧ୍ୟାରେ ଭୂତ ପୁଣି ଆସିଲା । ଘର ଚଟାଣରେ ନ'ଟି ବାଉଁଶ ଟୋକେଇ ତଳ ଉପର ହେଇ ଗଦା ହେଇଥିଲା । ମା' ଝିଅ ଦୁହେଁ ସବା ତଳ ଟୋକେଇ ଭିତରେ ଲୁଚିଗଲେ । ଭୂତ ଉପର ଆଡୁ ଗୋଟି ଗୋଟି କରି ଆଠଟି ଟୋକେଇ ଓଲଟାଇଲା । ଶେଷ ଟୋକେଇ ଓଲଟେଇବା ଆଗରୁ କୁକୁଡ଼ା 'କୁକ୍ କୁ ରେ କୁ' କରି ରାବିଦେଲା । ଭୂତ ଡରରେ ଘର ଛାଡ଼ି ଚାଲିଗଲା । ଗଲାବେଳେ କହିଗଲା, 'ତୁମେମାନେ ଆଜି ବି ଜିତିଗଲ ।' ଘର ଭିତରେ ଆଉ ଲୁଚିବାପାଇଁ ଅନ୍ୟ ଉପାୟ ନପାଇ ମା' ଝିଅ ଘର ଛାଡ଼ି ପଳାଇବାକୁ ଚେଷ୍ଟା କଲେ । ହାତରେ ଯାହା ଜିନିଷ ପଡ଼ିଲା ତାକୁ ସାଙ୍ଗରେ ନେଇ ବାହାରିଲେ । ବାଟରେ ଜଣେ ତାନ୍ତ୍ରିକ ସାଙ୍ଗେ ସେମାନଙ୍କର ଦେଖା ହେଲା । ତାନ୍ତ୍ରିକ ସେମାନଙ୍କୁ ଘରଛାଡ଼ି ଚାଲି ଯାଉଥିବାର କାରଣ ପଚାରିବାରୁ ମା' ଝିଅ ଯାହା ଯାହା ଘଟିଯାଇଛି ସବୁକଥା କହିଲେ ।

ତାନ୍ତ୍ରିକ ସେମାନଙ୍କୁ ଜଣେଇଦେଲା ଯେ ଘରଛାଡ଼ି ଯେଉଁଠି ରହିଲେ ବି ଭୂତ ସେମାନଙ୍କର ପିଛା ଛାଡ଼ିବ ନାହିଁ । ତାନ୍ତ୍ରିକ ପୁଣି କହିଲା, 'ଭୂତକୁ ଖଣ୍ଡ

ଖଣ୍ଡ କରି କାଟି ପୋଡ଼ି ପାଉଁଶ କରି ବିଭିନ୍ନ ଜାଗାରେ ତା'ର ପାଉଁଶ ବିଞ୍ଚି ଦେଇ ଆସିଲେ ମଧ୍ୟ ସେ ପୁଣିଥରେ ଯୋଡ଼ି ହୋଇଯିବ । ଯେଉଁ ପର୍ଯ୍ୟନ୍ତ ଭୂତ-ନିବାରଣ ପୂଜା ନ କରାଯାଇଛି ଭୂତ ବାରମ୍ବାର ଆସିବ ହିଁ ଆସିବ ।'

ମା' ଝିଅ ତାନ୍ତ୍ରିକକୁ ନେଇ ଗାଁକୁ ଫେରିଲେ । ତାନ୍ତ୍ରିକ ଘରେ ପହଞ୍ଚି ସଙ୍ଗେ ସଙ୍ଗେ ତା' ପୂଜା ପାଇଁ ସାମଗ୍ରୀ ଯୋଗାଡ଼ କରିବାରେ ଲାଗିଲା । ସେ କିଛି କଞ୍ଚାବାଉଁଶ ଆଣି ନିଆଁରେ ସେକି ଖଣ୍ଡ ଖଣ୍ଡ କରି କାଟି ବତା ଚିରିଲା । ସେ ଚମରୀ ଗାଈ ବାଳରେ ଦଉଡ଼ିଟିଏ ବଳିଲା । ସୂର୍ଯ୍ୟ ଅସ୍ତ ହେଲା ପରେ ଭୂଇଁ ଉପରେ ମଣ୍ଡଳ କାଟି ଧାଡ଼ି ଧାଡ଼ି କଉଡ଼ି ଥୋଇ, ପୂଜା ଆରମ୍ଭ କଲା । ତା' ପରେ ସବୁ ସନ୍ଧ୍ୟାରେ ଯେଭଳି ହୁଏ ସେ ଭଳି ଭୂତ ଆସିଲା । ଗାଁର କୁକୁରମାନେ ଭୁକିବାକୁ ଲାଗିଲେ । ଭୂତ ଘରେ, ବାହାରେ ପହଞ୍ଚି ମା' ଓ ଝିଅର ନାଁ ଧରି ଡାକିଲା । ତାନ୍ତ୍ରିକ ଭୂତ ଆଗକୁ ଯାଇ ମନ୍ତ୍ରେଇଥିବା ହାଡ଼ରେ ତାକୁ ପିଟିଲା । ସେ ବଡ଼ପାଟିରେ ମନ୍ତ୍ର ବୋଲୁଥାଏ ଆଉ ପିଟୁଥାଏ । ତାନ୍ତ୍ରିକ ଓ ଭୂତ ମଧ୍ୟରେ ବଡ଼ ଧରଣର ମାରପିଟ ଆରମ୍ଭ ହେଲା । ଭୂତ ଦେହରୁ ନା ଝାଳ ବାହାରୁଥାଏ ନା ସେ ହାଲିଆ ହେଉଥାଏ । ତାନ୍ତ୍ରିକ ତା' ଦେହରୁ ବହି ଯାଉଥିବା ଝାଳ ପୋଛି ଭୂତ ସାଙ୍ଗରେ ଲଢ଼େଇ କରୁଥାଏ । ମା' ଝିଅ ଏ ଦୃଶ୍ୟ ଦେଖି ଛାନିଆରେ ଘର କୋଣରେ ଲୁଚି ରହିଥାନ୍ତି । ଶେଷରେ ମନ୍ତ୍ରବଳରେ ତାନ୍ତ୍ରିକ ଭୂତକୁ କାବୁ କରିଦେଲା । ସେ ଆଗରୁ ରଖିଥିବା ବାଉଁଶ ପାତିଆ ଭୂତର ଗଣ୍ଠିମାନଙ୍କରେ କିଳିଦେଲା । ତାକୁ ଚମରୀ ଗାଈ ବାଳର ଦଉଡ଼ିରେ ଆଣ୍ଟ କରି ବାନ୍ଧିଦେଲା । ସେ ଭୂତର ଛାତି ଉପରେ ବସିପଡ଼ି ଅତି ଉଚ୍ଚ ଗଳାରେ ମନ୍ତ୍ର ପଢ଼ିବା ଆରମ୍ଭ କଲା । ଭୂତ ଭିତରେ ଲୁଚି ରହିଥିବା ପ୍ରେତାତ୍ମା ବାହାରିପଡ଼ି ଶୂନ୍ୟରେ ମିଳେଇଗଲା ।

ମା'ଝିଅଙ୍କର ଭୂତ ଭୟ କଟିଗଲା । ବଣିକର ଭୂତ ମଧ୍ୟ ବନ୍ଧନରୁ ମୁକ୍ତି ପାଇଲା । ସେମାନେ ଏଥର ମହାଆନନ୍ଦରେ ରହିଲେ ।



ଦିନନାଥ ପାଠୀ ଚିତ୍ର କରନ୍ତି, ଚିତ୍ର, ଭାସ୍କର୍ଯ୍ୟ ଓ ସ୍ଥାପତ୍ୟକୁ ନେଇ ଗବେଷଣା କରନ୍ତି । ଏସବୁ ସାଙ୍ଗକୁ କବିତା, ଗଳ୍ପ, ଉପନ୍ୟାସ, ଭ୍ରମଣ କାହାଣୀ ଓ ଜୀବନୀ ମଧ୍ୟ ଲେଖନ୍ତି । କିଶୋରଙ୍କ ପାଇଁ ଏହି ବହି ଲେଖିବା ଆଗରୁ ସେ ୟୁରୋପର ପିଲାଙ୍କ ପାଇଁ ଓଡ଼ିଶୀ ନୃତ୍ୟ ଉପରେ ବହି ରଚନା କରିଛନ୍ତି ଯାହାକୁ ନିଉୟର୍କର ୟୁନିସେଫ୍ ସଂସ୍ଥା ପୃଥିବୀର ଅଠରଟି ଭାଷାରେ ପ୍ରକାଶ କରିଛନ୍ତି । ଓଡ଼ିଶାର ଗ୍ରାମ୍ୟ ସଂସ୍କୃତି ସଂପର୍କିତ ଅନ୍ୟ ଏକ ପିଲାଙ୍କ ବହି ଜର୍ମାନୀରେ ଆଠଟି ଭାଷାରେ ପ୍ରକାଶିତ । ଦିନନାଥ ବହୁ ଅନ୍ତର୍ଜାତୀୟ ଓ ଜାତୀୟ ପୁରସ୍କାର ପାଇଛନ୍ତି । ସେ ଜାତୀୟ ଲଳିତ କଳା ଏକାଡ଼େମୀର ସଚିବ ଥିଲେ । ଭୁବନେଶ୍ୱରଠାରେ ପ୍ରତିଷ୍ଠିତ ଚିତ୍ରକଳା ମହାବିଦ୍ୟାଳୟର ସେ ପ୍ରତିଷ୍ଠାତା ଅଧ୍ୟକ୍ଷ ।




